# କଥା-କାହ୍ନିଁକ

—ଲେଖକ—

ଶ୍ରୀ ପ୍ରାଣନାଥ ମିଶ୍ର

ପ୍ରଥମ ସଂସ୍କରଣ

୧୯୭୦

ପ୍ରକାଶକ

ଶ୍ରୀ ରାମଚନ୍ଦ୍ର କର

ଓଡିଶା ବୁକ୍ ଏମ୍ପୋରିୟମ୍

କଟକ—୨

ମୂଲ୍ୟ ଷାଠିଏ ନୂଆ ପଇସା

# ସୂଚୀ





## ଓଟ ପିଠିରେ କୁଜ ଥାଏ କାହିଁକି ?

[ ରାଜସ୍ଥାନୀ ଲୋକକଥା ]

ଈଶ୍ୱର ଏ ସଂସାରକୁ ତିଆରି କରିଛନ୍ତି । ଏ ଆକାଶରେ ଚନ୍ଦ୍ର, ସୂର୍ଯ୍ୟ ପୁଣି ଅସଂଖ୍ୟ ତାରା ଖଞ୍ଜି ଦେଇଛନ୍ତି ସେହି ଈଶ୍ୱର । ପର୍ବତ କରିଛନ୍ତି ସେହି । ତାଙ୍କରି ଇଚ୍ଛାରେ ସେଥିରୁ ନଈ ବହିଯାଉଛି । ତାଙ୍କରି ଇଚ୍ଛାରେ ସମୁଦ୍ରରେ ଲହରୀ ଉଠୁଛି । ଈଶ୍ୱର ପ୍ରଜାପତିର ଦେହକୁ ଚିତ୍ର ବିଚିତ୍ର କରି ଗଢ଼ିଛନ୍ତି । ଆମ୍ବ ଗଛର ରସକୁ ସେ ମିଠା କରିଛନ୍ତି, ନିମପତ୍ରକୁ ପିତା କରିଛନ୍ତି । ମଣିଷ, ପଶୁ, ପକ୍ଷୀ, ଗଛ, ବୃକ୍ଷ, ପୋକ ଯୋକ, ଯାହା କିଛି ଆମେ ଦେଖୁଛୁ, ସେ ସବୁ ତାଙ୍କରି ତିଆରି ।

ଈଶ୍ୱର ଏ ସଂସାରର ଜୀବଜନ୍ତୁ, ଗଛବୃକ୍ଷ, ପାଣି ପବନ ସବୁ ତିଆରି କରି ସମସ୍ତଙ୍କ ଲାଗି କାମ ଖଞ୍ଜି ଦେଲେ । ଗଛବୃକ୍ଷ ପ୍ରାଣୀମାନଙ୍କ ଲାଗି ଫୁଲ ଫଳ ଦେଲେ । ମନୁଷ୍ୟ ଫସଲ କରି ନିଜେ ବଞ୍ଚିଲା, ଅନ୍ୟ ଜୀବଙ୍କୁ ବଞ୍ଚାଇଲା । ପଶୁପକ୍ଷୀ ମଧ୍ୟ ନିଜ ଜୀବନ

ବଞ୍ଚାଇବା ପାଇଁ ଶ୍ରମ କରି ମନୁଷ୍ୟଙ୍କୁ ନାନାଭାବରେ ସାହାଯ୍ୟ କଲେ । ଓଟ କିନ୍ତୁ କିଛି ପରିଶ୍ରମ କଲା ନାହିଁ । ଗଛ ଛାଇରେ ସେ ସବୁବେଳେ ଶୋଇ ଘୁଙ୍ଗୁଡ଼ି ମାରୁଥାଏ । ଯେତେ ଯେ କହିଲେ କିଛି ଶୁଣେ ନାହିଁ, କିଛି ବୁଝେ ନାହିଁ । ଖାଲି ଗଡ଼ ଗଡ଼ ସବୁବେଳେ ଶୁଏ, କହିଲେ ବିରକ୍ତ ହୁଏ । ନାକ ପୁଡ଼ାକୁ ଫୁଲେଇ ମୁହଁ ଗୋଜିଆ କରି ଖଟେଇ ହୋଇପରି କହେ "କୁଜ୍ କୁଜ୍ କୁଜ୍ ।" ସେତେବେଳେ ତା ପିଠିଟି ଗୁରିଚଉରିସ ଥାଏ । ସେଥିରେ କୁଜ ନ ଥାଏ । ଶୋଇବାକୁ ସୁବିଧା ହେଉଥାଏ ।

ଦିନେ ଘୋଡ଼ାଟିଏ କ'ଣ କଲା ନା ନିଜ କାମରେ ଗଲାବେଳେ ବାଟରେ ଓଟକୁ ଦେଖି କହିଲା—

ଓଟ ଭାଇ, ଓଟ ଭାଇ,<br>
ପାଇନ୍ଥୁ ବଡ଼ିଆ ଗଛ ଛାଇ ।<br>
ବେଳତ ହେଲାଣି ଦଣ୍ଡଘଡ଼ି<br>
ଏତେବେଳେ ଶୋଉ ଗଡ଼ି ଗଡ଼ି ?<br>
ଲାଜ ନାହିଁ ତତେ, ଆଖି ବୁଜୁ,<br>
ଓଟ କହେ—'କୁଜୁ' 'କୁଜୁ' 'କୁଜୁ' ।

ଆଉଦିନେ ରାତି ପାହି ସକାଳ ହେଲା । ଖବର ପଡ଼ିଲା । ବଳଦ ତା ବେକର ଘଣ୍ଟି ଟଣ୍ ଟଣ୍ କରି ହଳକୁ ଯାଉଥିଲା । ବାଟରେ ଓଟକୁ ଦେଖି କହିଲା—

ପାହିଲା ରାତି ପଡ଼ିଲା ଖବର<br>
କାମେ ଲାଗିଲେଣି ଦୁନିଆ ସାରା ।<br>
ଚଢ଼େଇ ଗଲେଣି ଅଧାର ଖୁଣ୍ଟି,<br>
ପିଲାଏ ଗଲେଣି କୋଳ ସାଉଣ୍ଟି ।

ବେଳତ ହେଲାଣି ପାଞ୍ଚ ଘଡ଼ି
ଏତେ ବେଳେ ଶୋଉଚୁ ଗଡ଼ି ଗଡ଼ି ।
ମୋ ବେକର ଘଣ୍ଟି ଠଣ ଠଣ
ତୋ କାନକୁ ଶୁଭୁ ନାହିଁ କଣ ?
ସରମ ନ ଲାଗେ ଆଖି ବୁଜୁ
ଓଠ କହେ—'କୁଜୁ' 'କୁଜୁ' 'କୁଜୁ' ।

ବଳଦ ପଛରେ ଚଢ଼େଇଟିଏ ଆସିଲା । ଦେଖିଲା, ଅବେଳରେ ଓଠ ନଘୋଡ଼ ନିଦରେ ଶୋଇଛି । ତା ମନକୁ ଯାହା ଆସିଲା ବହେ କହିଗଲା । ଏମିତ କୁକୁର, ମାଙ୍କଡ଼, ଚିଲ, ଏପରି କି ସାନ ଜୀବ ଜନ୍ତୁ, ପିମ୍ପୁଡ଼ି ପର୍ଯ୍ୟନ୍ତ ସମସ୍ତେ ଓଠ ସବୁବେଳେ ଶୋଇବା ଦେଖି ତାକୁ ଚିଆରି ଚଦେ ଚଦେ କହିଲେ । ଓଠ କିନ୍ତୁ ସମସ୍ତଙ୍କୁ ଖତେଇ ହୋଇ ସେମିତି କହିଲା—'କୁଜୁ' 'କୁଜୁ' 'କୁଜୁ' ।'

ଓଠର ଏଇ 'କୁଜୁ କୁଜୁ' ଶୁଣି ଶୁଣି ସମସ୍ତେ ଆହୁରି ଚିଡ଼ିଗଲେ । ବନ ଦେବୀଙ୍କ ନିକଟରେ ଯାଇ ଗୁହାରି କଲେ ।

ବନ ଦେବୀ ଓଠ ପାଖକୁ ଆସିଲେ । ତାକୁ ଉଠାଇ ପଚାରିଲେ, "କିରେ, ଏ ସଂସାରର ସବୁ ଜୀବଜନ୍ତୁ ତ ଦିନଯାକ କାମ କରୁଛନ୍ତି—ରାତିରେ ଶୋଉଛନ୍ତି । ତୁ କାହିଁକି ଦିନରାତି ଏହି ଗଛ ଗୁଳରେ କଅଁଳ ବାଲି ବିଛଣାରେ ଶୋଇ ଘୁଙ୍ଗୁଡ଼ି ମାରୁଛୁ ?"

ବନଦେବୀଙ୍କର କଥା ଶୁଣି ବି ଓଠ ଆଗଭଳି କହିଲା, 'କୁଜୁ' 'କୁଜୁ' 'କୁଜୁ' ।

ଓଠର ଏ ଢଙ୍ଗ ଦେଖି ବନଦେବୀ ରାଗିଗଲେ । ତାଙ୍କ ମୁହଁ ରକ୍ତ ପରି ଲାଲ ହୋଇଗଲା । ଆଖିରୁ ନିଆଁ ବାହାରିଲା ପରି ଦିଶିଲା । ସେ ବିରକ୍ତ ହୋଇ କହିଲେ—

ପ୍ରଭୁ ଏ ଦୁନିଆ ଗଢ଼ି,
ଦେଖା ଶୁଁହା ଭଲ ମନ୍ଦ ବୁଝିବାକୁ
ମୋ ଜମାରେ ଦେଲେ ଛାଡ଼ି ।



ମୁହିଁ ଏ ବନସ୍ତ ଦେବୀ,
ତୋର ଏ ଅଳସ— ପଣ ଲଗି ଆଜି
ଉଚିତ ଦଣ୍ଡ ମୁଁ ଦେବି ।

ଯେଉଁ ନାକରେ ତୁ ମାରୁ ଘୁଙ୍ଗୁଡ଼ି
ଲୋକେ ତୋର ସେହି ନାକକୁ ଫୋଡ଼ି,
ଓଟାରିବେ ବାନ୍ଧି ଦଉଡ଼ି ତହିଁ
ସେତେବେଳେ ଯାଇ ବୁଝିବୁ ତୁହି ।
ଶୋଇରହୁ ଦେଖି ଶୀତଳ ଛାଇ
ଛାଇ ତୋ ଜୀବନେ ପାଇବୁ ନାହିଁ ।

ଯେ ଯେତେ କହିଲେ କିଛି ନ ବୁଝୁ
ଖାଲି ହେଉଥାଉ 'କୁଜୁ' 'କୁଜୁ' ।
ପିଠିରେ ତୋହର ହୋଇବ କୁଜ
ତତଲା ବାଲିରେ ବୋହିବୁ ବୋଝ ।

ଏହା କହି ଓଟର ଗୃହ ତଉରସ ପିଠିରେ ତାଙ୍କ ବାଡ଼ିଟିକୁ ଛୁଇଁ ଦେଲାକ୍ଷଣି ଓଟ ପିଠିରେ ବଡ଼ କୁଜଟିଏ ବାହାରି ପଡ଼ିଲା । ତାକୁ ବଡ଼ ଅଡୁଆ ଲାଗିଲା । ତା ନିଦ ବି ଭାଙ୍ଗିଗଲା । ବନଦେବୀଙ୍କ ଗୋଡ଼ତଳେ ପଡ଼ି ସେ କେତେ କାକୁତି ମିନତି କଲା, କ୍ଷମା ମାଗିଲା । ବନଦେବୀ କିନ୍ତୁ କିଛି ଶୁଣିଲେ ନାହିଁ, କୁଆଡ଼େ ଉଭେଇ ଗଲେ । ଓଟ ଅମାନିଆ ହେବା ଫଳ ପାଇଲା । ସେହି ଦିନଠୁଁ ଓଟ ପିଠିରେ କୁଜ ବାହାରିଲା ।



ମରୁଭୂମି ଯେଉଁଠି ଗଛ ନାହିଁ, ବୃକ୍ଷ ନାହିଁ, କି ଘର ଦ୍ୱାର କିଛି ନାହିଁ— ଯୁଆଡ଼େ ଗୃହିଁବ ଖାଲି ବାଲି ହାଁ ହାଁ ଖାଁ ଖାଁ କରେ, ସେହି ମରୁଭୂମି ପାରିହେବା ପାଇଁ ଓଟ ହେଲା ଜାହାଜ । ତା ପିଠିରେ ମନଇଚ୍ଛା ଯେ ଯେତେ ଜିନିଷ ପତ୍ର ଲଦି ଦିଅନ୍ତି । ତା' ନାକରେ ଦଉଡ଼ି ବାନ୍ଧି ଆଗରେ ଜଣେ ଗୃଲେ । ନ ଖାଇ ନ ପିଇ ଓଟ ସେହି ବାଲିବନ୍ତ ମରୁଭୂମିରେ ବୋଝ ବୋହି ଗୃଲିଥାଏ ।

## ପାପ କାଟ କାଟେ କାହାଁକ ?

[ ଅ଼ନ୍ଧ୍ର ଲୋକ କଥା ]

ଈଶ୍ୱର ଯେତେବେଳେ ନୂଆ କରି ଏ ପୃଥିବୀକୁ ଗଢ଼ିଲେ ଆଉ ସେଥିରେ ରହିବା ପାଇଁ ମନୁଷ୍ୟ, ପଶୁ, ପକ୍ଷୀ ପ୍ରଭୃତି ଜୀବ-ଜନ୍ତୁଙ୍କୁ ସୃଷ୍ଟି କଲେ ସେତେବେଳେ ଜୀବଜନ୍ତୁ ସମସ୍ତେ ଥିଲେ ଅମର । ମୃତ୍ୟୁ ଥିଲା ଈଶ୍ୱରଙ୍କ ହାତରେ । ପୃଥିବୀର ଜୀବମାନେ ଅମର ହେଲେ ଆଉ କାହାକୁ ଡରୁଛି କିଏ ? ମାନୁଛି କିଏ ? ମନ ଇଚ୍ଛା ଯେ ଯାହାର ଚଳିଲେ ।

ଏମିତି କେତେ କାଳ ଗଲା । ଥରେ ମୃତ୍ୟୁକୁ ଈଶ୍ୱର ପୃଥିବୀକୁ ପଠାଇଲେ । ପୃଥିବୀକୁ ମୃତ୍ୟୁ ଆସିବାରୁ ମନୁଷ୍ୟ ଈଶ୍ୱରଙ୍କ ପାଖକୁ ଯାଇ ପ୍ରାର୍ଥନା କଲା—

ଆହେ ଦୟାମୟ ବିଶ୍ୱ-ବିହାରୀ  
ଶୁଣ ଆମର ବିକଳ ଗୁହାରି ।  
ଦେଲ ମଣିଷ ଜନମ ଆମକୁ  
ଦୁନିଆରେ କରିବାକୁ କାମକୁ ।  
ହେଲେ, ସଂସାରର ଜୀବ ମେଳରେ  
ହୀନ କରିଛ ଆମକୁ ବଳରେ ।

ମୃତ୍ୟୁ ନ ଥିବାରୁ ଏତେ ବରଷ
ବଞ୍ଚି ଥିଲୁ ସିନା ହୋଇ ହରଷ ।
ତୁମ ଆଜ୍ଞାରେ ଆସିଲା ମରଣ,
ଆମ ବଞ୍ଚିବା ହେବ ଅକାରଣ ।
ବାଘ ଭାଲୁ ଆଦି ଯେତେ ଶ୍ୱାପଦ,
ଆମ ପାଇଁ ହେବେ ବଡ଼ ବିପଦ ।
ମନ ଆନନ୍ଦେ ଆମକୁ ଖାଇବେ,
ହସ ଖୁସିରେ ଜଗତେ ରହିବେ ।
ଏହା କାହିଁକି କରିଲ ସାଇଁ ହେ,
ମୃତ୍ୟୁ ପଠାଇଲ ଆମ ପାଇଁ ହେ ।

ମନୁଷ୍ୟଙ୍କର ବିକଳ ଗୁହାରି ଶୁଣି ଈଶ୍ୱରଙ୍କର ମନ ତରଳି ଗଲା । ସେ ଅଭୟ ଦେଇ କହିଲେ—

ବଳ ତୁମର ଅଳପ ବୋଲି
ବୃଥାରେ ଯାଅ ଡରି,
ଜାଣିନାହଁ କି, ମୁଣ୍ଡରେ ତୁମ
ବୁଦ୍ଧି ଦେଇଛି ଭରି ।

ବୁଦ୍ଧି ବଳରେ ଜିତିବ ତୁମେ
ଏଇ ଦୁନିଆ ସାରା,
ବୁଦ୍ଧି ବଳରେ ଉଡ଼ି ବୁଲିବ
ଯେସନ ଚେଢ଼ଣୀ ପାରା ।
ବୁଦ୍ଧି ବଳରେ ଭେଦିବ ତୁମେ
ସାତ ସମୁଦ୍ର ପାଣି,

ଅତଳ ତଳୁ ଆଣି ପାରିବ
ମଣି ମୁକୁତା ଟାଣି ।
ବାଘ, ଭାଲୁ ସେ ହୋଇବେ ବନ୍ଦୀ,
ସିଂହ ମାନିବ ହାରି,
ହଳ ଲଙ୍ଗଳ ଟାଣିବ ଘୋଡ଼ା
ଓଟ ବୋହିବ ଭାରି ।

ଈଶ୍ୱରଙ୍କ କଥାରେ ମଣିଷ ମନରୁ ଜନ୍ତୁଙ୍କ ଭୟ ଦୂର ହେଲା । ତାକୁ ଟିକିଏ ହାଲୁକା ଲାଗିଲା ସତ କିନ୍ତୁ ମରିବା ଭୟ ତ ଗଲା ନାହିଁ !

ସେଥିପାଇଁ ସେ ହାତ ଯୋଡ଼ି ପୁଣି କହିଲା, "ପ୍ରଭୁ ହେ, ତୁମେ ଯେତେବେଳେ ଜନ୍ମ ଦେଇଛ, ଯାହା କହୁଛ ସବୁ ଆମେ ସତ ବୋଲି ମାନୁଛୁ । ତୁମ ଆଶୀର୍ବାଦରୁ ଆମେ ଏ ଦୁନିଆରେ ବୁଦ୍ଧି ବଳରେ ଅସାଧ୍ୟ କାମ କରିବୁ, ହେଲେ ତୋ କରି ଦିନେ ମରିଯିବୁ । ଆମକୁ ସେହି ମୃତ୍ୟୁ ଭୟରୁ ରକ୍ଷା କର ।"

ଈଶ୍ୱର ହସି ହସି ମଣିଷକୁ ଅମର ଲଡ଼ୁ ଖୋଇ ଦେଇ କହିଲେ, "ଆଚ୍ଛା, ତୁମେ ମଣିଷମାନେ ଆଦୌ ମରିବ ନାହିଁ । ଯା'—"

ମଣିଷ ଈଶ୍ୱରଙ୍କୁ ପ୍ରଣାମ କରି ବିଦା ହୋଇ ଆସିଲା । ଦଶ ପାହୁଣ୍ଡ ଆସି ପୁଣି ଫେରି ପଡ଼ି ତାଙ୍କରି ପାଖରେ ହାତ ଯୋଡ଼ି ଠିଆ ହେଲା ।

ଈଶ୍ୱର ପଚାରିଲେ— ପୁଣି କ'ଣ ହେଲା ?

ମଣିଷ କହିଲା — ପ୍ରଭୁ, ଆମେ ଅମର ଲଡ଼ୁ ଖାଇ ମରିବୁ ନାହିଁ ସିନା ? ବୁଢ଼ା ହୋଇ ଯେତେବେଳେ ଦାନ୍ତ ପଡ଼ିଯିବ, ଆଖିର ତେଜ

କମିଯିବ, ହାତ ଗୋଡ଼ ଅଚଳ ହୋଇଯିବ, ସେତେବେଳେ ବଡ଼ କଷ୍ଟ ହେବ । ମନ ହେବ ମରିଯାନ୍ତି କି ତର ଯାଆନ୍ତି ।

ଈଶ୍ୱର ହସି ହସି କହିଲେ, "ତାକୁ ତ ବନ୍ଦ କରି ହେବ ନାହିଁ । ପିଲା ହୋଇ ଜନ୍ମ ହେବାଠୁଁ ବୁଢ଼ା ହେବାଯାଏ ଯେତୋଟି ଅବସ୍ଥା ଅଛି ସମସ୍ତେ ତାର ଭିତରେ ଗତ କରିବ । କେବଳ ମୁଁ ଏତିକି କରିବି ଯେ ତୁମ ଭିତରୁ ବୁଢ଼ା ମଣିଷଙ୍କ ଲାଗି ନୂଆ ଖୋଳ ପଠେଇ ଦେବି । ତୁମ୍ଭେମାନେ ବୁଢ଼ା ହେଲା ପରେ ସେ ଖୋଳ ଲଗେଇ ଦେଲେ ପୁଣି ଟୋକା ହୋଇଯିବ ।"

ମଣିଷ ଏତିକି ଶୁଣି ମହା ଖୁସି ।

ଈଶ୍ୱର ତାଙ୍କ କଥା ରକ୍ଷା କରି ବୁଢ଼ା ମଣିଷମାନେ ଟୋକା ହେବାଲାଗି ନୂଆ ଖୋଳଗୁଡ଼ାଏ ସ୍ୱର୍ଗରୁ ପୃଥିବୀକୁ ପଠାଇ ଦେଲେ । ଖୋଳଗୁଡ଼ିକ ଗୋଟିଏ ଟୋକେଇରେ ରଖି କୁକୁରକୁ କହିଲେ, "ନେଇ ଯା—ପୃଥିବୀରେ ମଣିଷମାନଙ୍କୁ ଦେଇ ଆସିବୁ ।"

କୁକୁର ଟୋକେଇଟି ଧରି ଚାଲିଲା । ଯାଉ ଯାଉ ବାଟରେ ଦେଖିଲା—ବଣରେ ସବୁ ଜନ୍ତୁଯାକ ଭୋଜି କରୁଛନ୍ତି । କୁକୁର ଟୋକେଇଟି ରଖିଦେଇ ସେମାନଙ୍କ ସଙ୍ଗରେ ଭୋଜି ଖାଇଲା । ପେଟେ ଖାଇଦେଲା ପରେ ଆସିଗଲା ମହାରଫୁଲିଆ ନିଦ । ଟୋକେଇଟି ରଖିଦେଇ ଗୋଟିଏ ଗଛମୂଳରେ ନଘୋଡ଼ ନିଦରେ କୁକୁର ଶୋଇପଡ଼ିଲା । ତାକୁ ନିଦ ଲାଗିବା ଆଗରୁ ଗୋଟିଏ ସାପ ସେ ବାଟେ ଯାଉଥିଲା । କୁକୁରକୁ ପଚାରିଲା—'ଏ ଟୋକେଇରେ କଣ ନେଉଛ ?'

କୁକୁର କହିଲା—"ନୂଆ ଖୋଳସବୁ ମଣିଷଙ୍କୁ ଦବାକୁ ନଉଛି । ଈଶ୍ୱର ପଠାଇଛନ୍ତି । ବୁଢ଼ାମଣିଷେ ଯୁାକୁ ପିନ୍ଧିଲେ ଟୋକା ହୋଇଯିବେ ।"



ଏତକ କହିଦେଇ କୁକୁର ଗୋଡ଼ ଉପରେ ଗୋଡ଼ ପକାଇ ଘୁଙ୍ଗୁଡ଼ି ମାଇଲା । ସାପ କଣ କଲା—ସେ ଟୋକେଇଟି ମୁଣ୍ଡେଇ ଚମ୍ପଟ୍ ।

କୁକୁରର ନିଦ ଭାଙ୍ଗିଲା—ସେ ଦେଖିଲା ଟୋକେଇ ନାହିଁ । ସେ ବୁଝିନେଲା ଯେ ସାପ ଛଡ଼ା ଆଉ କେହି ଯୁାକୁ ନେଇ ନାହିଁ । ସେ ସିଧା ସିଧା ମଣିଷଙ୍କ ପାଖକୁ ଯାଇ ସବୁ ଖବର କହିଦେଲା । କହିଲା—"ଈଶ୍ୱର ତୁମମାନଙ୍କ ପାଖକୁ ନୂଆଖୋଳ ମୋ ହାତରେ ପଠାଇଥିଲେ । ମୁଁ ବାଟରେ ଶୋଇପଡ଼ିଲି, ସାପ ସେ ସବୁ ନେଇ-ଯାଇଛି ।"

ମଣିଷ ଏ ଖବର ଈଶ୍ୱରଙ୍କୁ ଜଣାଇଲା । ଈଶ୍ୱର କହିଲେ— "ତୁମ କପାଳରେ ନାହିଁ—ମୁଁ କଣ କରିବି—ସାପ ତ ସେ ଖୋଳକୁ ମାଗି କରି ନେଇଲାଣି, ତାଠାରୁ ଆଣି ପିନ୍ଧିବ ନାହିଁ । ତୁମ୍ଭମାନଙ୍କୁ ବୁଢ଼ା ହୋଇ ମରିବାକୁ ହେବ । ସାପର ମଧ୍ୟ ସେ ଖୋଳ କିଛି କାମରେ ଆସିବ ନାହିଁ, କାରଣ ସେ ମଧ୍ୟ ମରିବ ।"

ସେହି ଦିନୁ ସାପ ନୂଆ ଖୋଳ ପିନ୍ଧି ପୁରୁଣା ଖୋଳ ବଦଳାଏ । ମନୁଷ୍ୟ ସାପକୁ ଭରି ଘୃଣା କରେ । ତାକୁ ଦେଖିଲାକ୍ଷଣି ଠେଙ୍ଗାରେ ପିଟେ ।



## ବୁଢ଼ିଆଣୀ ଜାଲ ବୁଣେ କାହିଁକି ?

[ ଇଟାଲି ଦେଶର ରୂପକଥା ]

ଝିଅଟିଏ । ନାଆଁ ତାର ଜୁଲିଆ । ଦେଖିବାକୁ ବଡ଼ ଓଜଳ ଓଜଳ । ତାର ଘର ନାହିଁ, ଦ୍ୱାର ନାହିଁ କି ବାପ ମା କେହି ନାହାନ୍ତି । ଅରକ୍ଷିତ ଦିଶେ ଦୁଆରେ ଦୁଆରେ ଠିଆ ହୋଇ ହାତ ପତାଏ । ତାକୁ ଯେ ଦେଖେ ତାର ଦୟା ହୁଏ । ପୋଷେ କି ମୁଠାଏ ନ ଦେଇ ରହିପାରେ ନାହିଁ । ଏମିତି ଭିକ ମୁଠିଏ ମୁଠିଏ ମାଗି ବଞ୍ଚି ରହିଲା ସେ ଦଶ ବର୍ଷ ।

ଦଇବ ଯୋଗକୁ ଥରେ ଜଣେ ଦୟାଳୁ ଲୋକ ଜୁଲିଆକୁ ଦେଖି ସବୁ କଥା ପଚାରିଲେ । ଜୁଲିଆ ତାର ହୀନମାନିଆ ଅବସ୍ଥା କଥା ଠିକ୍ ଠିକ୍ କହିଦେଲା । ଦୟାଳୁ ଭଦ୍ର ଲୋକ ଗୋଟିଏ ସୁନ୍ଦର

ଚରଖା ଆଣି ଜୁଳିଆକୁ ଦେଇ କହିଲେ—"ମା, ତୁ ଆଉ ଏମିତି କେତେକାଳ ହାତ ପତେଇ ବୁଲିବୁ ? ଏ ଅରଟଟି ନେ କ ଏଥିରେ ନିତ ସୂତା କାଟିବୁ । ଆଗ ଆଗ ସୂତା ଖିଅ ଧରିବ ନାହିଁ । ବେଳେ ବେଳେ ବଲଣା ସାଙ୍ଗରେ ତୋ ଆଙ୍ଗୁଠି ଯାଇ ତାକୁଡ଼ିରେ ଲାଗି କେଞ୍ଚି ହୋଇଯିବ । ଏଥିପାଇଁ ମନ ଖରାପ କରିବୁ ନାହିଁ । ସବୁବେଳେ ମନେ ରଖିଥିବୁ—

'ମାଗି ଖାଇବାଠୁଁ ଲାଗି ଖାଇବାଟି ଭଲ,
ମାଗିଖିଆ ହୁଏ ସବୁଦିନେ କଲବଲ ।'

କିଛିଦିନ ଲାଗିପଡ଼ି ଅଭ୍ୟାସ କଲେ ତେଣିକି ଭଲ ସୂତା ଖିଅ ବାହାରିବ । ପ୍ରଥମେ ପ୍ରଥମେ ମୋଟ ସୂତା ହେବ । ମୋଟ ସୂତା ଦେଖି ମଧ୍ୟ ନିରାଶ ହେବୁ ନାହିଁ । ଅଭ୍ୟାସର କରାମତି କମ୍ ନୁହେଁ । ଦିନେ ତୋର ରୂପ ଯେପରି ସୁନ୍ଦର ସେଥିରୁ ଅଧିକ ସୁନ୍ଦର ସୂତା ତୁ କାଟି ପାରିବୁ । ସେ ସୂତାକୁ ଯିଏ ଦେଖିବ ସେ କିଣିବ । ତୁ ଆନନ୍ଦରେ ଚଳିବୁ । ଆଉ ବାରଦ୍ୱାର ଶୁଣ୍ଢିପିଣ୍ଡା ହବୁ ନାହିଁ ।"

ଜୁଳିଆ ହାତ ପତେଇ ଅରଟଟି ନେଲା । ତୂଳା ଆଣିବ କେଉଁଠୁ ? ସେ ଦିନ ଟିକିଏ କଷ୍ଟ କରି ବେଶୀ ଲୋକଙ୍କ ଦୁଆରେ ଭିକ ମାଗିଲା । କାହିଁକି ନା ସେଦିନକରେ ତାର ଭିକ ମଗା ସରିଯିବ । ବେଶୀ ଦୁଆରେ ମାଗିବାରୁ ସେ ସେଦିନ ଟିକିଏ ଅଧିକ ଭିକ ପାଇଲା । ସେଥିରୁ ପେଟ ପୂରିବା ଭଳି ରଖି ବାକୀତକ ବଜାରରେ ବିକିଦେଇ ତୂଳା ବଲଣା କିଣି ଆଣିଲା ।

ତହିଁ ଆରଦିନଠୁଁ ଜୁଳିଆକୁ ଆଉ ଦ୍ୱାରେ ଦ୍ୱାରେ ହାତ ପତେଇବାର କେହି ଦେଖିଲେ ନାହିଁ । ସେ ମନ ଧ୍ୟାନ ଲଗେଇ

ସୂତା କାଟିଲା । ଅଳ୍ପ ଦିନ ଭିତରେ ତାର ସୂତା ଖୁବ୍ ସରସ ଓ ସରୁ ହେଲା । ହାଟ ବଜାରରେ ଜୁଲିଆର ସୂତାକୁ ସମସ୍ତେ ଆଦର କଲେ । ସେ ନୂଆ ନୂଆ ସୂତା ବିକି ସେଥିରେ ନଜର ଖାଇବା ଜିନିସ କିଣି ଆଣେ । ବଳକା ପଇସାରେ ପୁଣି ତୂଳା ବଳଣା କଣେ ।

କିଛିଦିନ ଏମିତି ଗଲାରୁ ତାର ବଳକା ପଇସାରେ ସେ ନୂଆ ନୂଆ ପୋଷାକପତ୍ର କିଣିଲା । ନୂଆ ପୋଷାକ ପିନ୍ଧିଲାରୁ ତାର ସୁନ୍ଦର ରୂପଟି ଆହୁରି ସୁନ୍ଦର ଦିଶିଲା । ତେଣେ ଦିନକୁ ଦିନ ସୂତା ଅଧିକ ସରୁ ଆଉ ସୁନ୍ଦର ହେଉଥାଏ । ଯେ ଦେଖିଲେ ସେ ତାକୁ ପ୍ରଶଂସା କଲେ । ଏମିତିକି ବେଳେବେଳେ ଦୂର ଦୂରାନ୍ତରୁ ଲୋକେ ଜୁଲିଆକୁ ଆଉ ତାର ସୂତା କଟା ଦେଖିବାକୁ ଆସିଲେ ।

ଜୁଲିଆ ସୂତା କାଟିଲା ବେଳେ କାହାରିକି ଅନାଏ ନାହିଁ । କାହାରି ସଙ୍ଗରେ କଥା ହୁଏ ନାହିଁ । ଏକ ଲୟରେ ସୂତା କାଟୁଥାଏ ।

ଗୁରିଆଡ଼େ ଜୁଲିଆର ପ୍ରଶଂସା କ୍ରମେ ତା କାନରେ ପଡ଼ିଲା । ନିଜର ରୂପ ଓ କାମର ପ୍ରଶଂସା ଶୁଣି ଶୁଣି ଜୁଲିଆର ମନରେ ଗର୍ବ ଆସିଲା । କିଛି ଦିନପରେ ତାର ଗର୍ବ ଏତେ ବଢ଼ିଗଲା ଯେ ମନ ମୋଟରେ ସେ ଫୁଲି ଉଠିଲା । ଆଉ ଇନ୍ଦ୍ର ଚନ୍ଦ୍ର କାହାରିକୁ ମାନିଲା ନାହିଁ । କାହାରିକୁ କଥା କହିଲା ନାହିଁ । ଏପରି ହେଲା ଯିନା କିନ୍ତୁ ଦିନକଲାଗି ହେଲେ ଜୁଲିଆ ତା ସୂତା କଟା ବନ୍ଦ କରି ନ ଥାଏ । ସୂତାକଟାରେ ତାହାର ସାରା ଦିନ କଟିଯାଏ ।

ଦିନେ ପରୀରାଣୀ ଜୁଲିଆ ପାଖକୁ ଆସିଲେ । ସେ ଆସିବା ଆଗରୁ ଭାବିଥିଲେ — ଜୁଲିଆର ତ ଏତେ ପ୍ରଶଂସା ଶୁଣାଯାଉଛି । ସେ ନିଶ୍ଚେ ଭଲ ପିଲା ହୋଇଥିବ । ମୁଁ ପହଞ୍ଚିଲା କ୍ଷଣି ଜୁଲିଆ

ଆସି ଦଣ୍ଡବତ କରିବ, ବସିବାକୁ ଆସନଟିଏ ଦେଇ ମତେ ବସିବାକୁ କହିବ । ମୁଁ ବସିଲାଠୁଁ ମୋ ପାଖରେ ଠିଆ ହୋଇ ମନେ କେତେ କଥା ପଚାରିବ । ମୁଁ ଯାହା ପଚାରିବି ସେ ସବୁର ଉତ୍ତର ଦେବ । ମୁଁ ତା ପାଖରୁ ଆସିଲା ବେଳେ ମତେ 'ଆଉ ଥରେ ବସନ୍ତୁ' ବୋଲି କହିବ । ନ ହେଲେ ମତେ ବଳେଇ ଦେବାକୁ ଖଣ୍ଡେ ଦୂର ମୋ ସଙ୍ଗରେ ଆସିବ । ଫେରିଲାବେଳେ ପ୍ରଣାମ କରି ଫେରିବ—ଏମିତି କେତେ କ'ଣ ଭାବି ପରୀରାଣୀ ଜୁଲିଆ ପାଖରେ ପହଞ୍ଚିଲେ ।

ମାତ୍ର ଫଳ ହେଲା ଠିକ୍ ଓଲଟା । ଜୁଲିଆ ଏକ ଲୟରେ ସୂତା କାଟୁଥାଏ । ପରୀରାଣୀ ସେଠି ପହଞ୍ଚି ଅନେକ ବେଳ ଠିଆ ହେଲେ । ଏଠି ସେଠି ଥରେ ବୁଲାଚାଲା କଲେ । ଗଳା ଖଙ୍କାରି ମାଇଲେ, କାଶିଲେ, ଛିଙ୍କିଲେ । ଏସବୁ କରି ମଧ୍ୟ ଦେଖିଲେ ଜୁଲିଆର ଆଖି ତାର ସୂତା ଖିଅ ଛଡ଼ା ଆଉ କୋଉଠି ନାହିଁ । ସେ ସୂତାକଥା ଛଡ଼ା ଆଉ କିଛି ଜାଣୁ ନାହିଁ ।



ଇମିତି କେତେବେଳ ଏପଟ ସେପଟ ହୋଇ ଶେଷକୁ ପରୀରାଣୀ ଜୁଲିଆ ପାଖରେ ଆସି ଠିଆ ହେଲେ । ତେବେବି ଜୁଲିଆ ଅନାଇଲା ନାହିଁ । ଶେଷକୁ ପରୀରାଣୀ ଡାକଲେ—'ଜୁଲିଆ—'

ନଜର ନାଁ ଶୁଣି ଜୁଲିଆ ଟିକଏ ଆଖି ଉଠାଇ ତାଙ୍କୁ ଚାହିଁ ଦେଲା ତ ପୁଣି ଆଖି ନେଲା ସେହି ସୂତାଖିଅ ଉପରକୁ । ରାମ କ କୃଷ୍ଣ କ ବିଷ୍ଣୁ କିଛି କହିଲା ନାହିଁ ।

ଜୁଲିଆର ଏ ଆଚରଣକୁ ତୁମେ ଏକାଗ୍ରତା କହ ବା ମନମୋଟ କହ, ଯାହା କହ, ପରୀରାଣୀ କିନ୍ତୁ ରାଗରେ ଫାଟିଗଲେ । ତାଙ୍କର ମୁହଁ ଲାଲ ପଡ଼ିଗଲା । ଓଠ ଥରାଇ ପରୀରାଣୀ କହିଲେ—

ମନମୋଟୀ,
ଗରବରେ ତୁହି ପଡ଼ୁ ଫାଟି ।
ଗୁରୁ ଗୁରୁଜନ ଆଗରେ ଦେଖିବ
କାମ ଛାଡ଼ି ପାରୁ ନାହୁଁ ଉଠି ।

ଭାଙ୍ଗି ଯିବ ତୋର ଟାଣପଣ
ଆଜିଠାରୁ ଭଲକରି ଜାଣ,
ସୁନ୍ଦର ରୂପ ତୋ ଉଭେଇ ଯିବ ଲୋ
ବୁଢ଼ୀଆଣୀ ରୂପ ପାଇବୁଟି ।

ସୂତା କାଟୁଥିଲୁ ଏତେ କାଳ
ଏଥର ବୁଣିବୁ ତୁହି ଜାଲ ।
ସେ ଜାଲେ ପଡ଼ିଲେ ପୋକ, ମଶା ମାଛି
ତାଙ୍କୁ ଖାଇ ବଞ୍ଚି ରହିବୁଟି ।

ପରୀରାଣୀଙ୍କର କଥା ଶୁଣି ଜୁଲିଆ ଚମକି ପଡ଼ିଲା । ସେ ଅରଟ ଛାଡ଼ି ଦେଇ ପରୀରାଣୀଙ୍କ ପାଦତଳେ ଲମ୍ବ ହୋଇ ପଡ଼ିଗଲା । ତାର ଦୋଷ ଅପରାଧ କ୍ଷମା କରିବାକୁ କେତେ କହିଲା, କାନ୍ଦି କାନ୍ଦି

ଗଡ଼ଗଲା । ପଣ୍ଡି ରାଣୀ କହୁ ଶୁଣିଲେ ନାହିଁ—ଗୁଳିଗଲେ । ଜ୍ଵଳିଆର କାନ୍ଦ, କାକୁତି ମିନତି ସବୁ ଅକାରଣ ହେଲା ।



ସେହିଦିନୁ ସେହି ସୁନ୍ଦରୀ ଜ୍ଵଳିଆ ହେଲା ଅସୁନ୍ଦର ବୁଢ଼ୀଆଣୀ । ସେ ଆଉ ଲଜରେ ଆଲୁଅକୁ ନ ଆସି ଅନ୍ଧାରିଆ ଜାଗାରେ ଜାଲ ମେଲ ଚାକି ବସିଥାଏ । କେତେବେଳେ ମଶା, ମାଛି କି ଆଉ ସାନ ପୋକଟିଏ ସେ ଜାଲରେ ପଡ଼ିଲେ ସେ ଖାଇବ ବୋଲି ।



# ବାଘ ଦେହରେ ପଟା ପଟା ଦାଗ କାହିଁକି ?

[ ଆସାମୀ ଲୋକକଥା ]

ଗହନ ବନସ୍ତର ଏକ ଅନ୍ଧାରୁଆ ଖୋଲରେ ଥାଆନ୍ତି ବାଘ ଆଉ ବାଘୁଣୀ ଦୁହେଁ । ସକାଳ ହେଲେ ବଣ ଯାକ ବୁଲି ଶିକାର ଖୋଜନ୍ତି । ଶିକାର ପାଇଲେ ମନଇଚ୍ଛା ପେଟେ ପେଟେ ଖାଇ ଝରଣାରୁ ପାଣି ପିଇ ନିଜ ଘରକୁ ଫେରନ୍ତି । ଆରାମରେ ଶୋଇ ପଡ଼ନ୍ତି । ସଞ୍ଜ ଆଗରୁ ଶିକାର ନ ଜୁଟିଲେ ରାତିସାରା ବୁଲି ବୁଲି ଶିକାର ଖୋଜନ୍ତି । ସେ ଦୁହିଁଙ୍କୁ ଦିନରେ ଯେମିତି ଦିଶେ ରାତିରେ ବରଂ ତାଠୁଁ ଭଲ ଦିଶେ । ତାଙ୍କୁ ପିଲା ସମସ୍ତେ ଡ଼ରନ୍ତି, ତାଙ୍କୁ ପୁଣି ଡରାଇବ କିଏ ? ସେ ଦୁହେଁ ନିଜେ ଜନ୍ତୁ ଶିକାର ନ କଲେ ଅନ୍ୟର ମରାଜନ୍ତୁ କି ମଲା ଜନ୍ତୁକୁ ଛୁଅଁନ୍ତି ନାହିଁ । କେବେ କେବେ ଶିକାର ନ ମିଳିଲେ ସେମିତି ଭୋକିଲା ପେଟରେ ବୁଲୁଥାନ୍ତି । ଏମିତି ଦୁଇ ଚାରି ଦିନ ବି ଚାଲିଯାଏ ।

ବହୁକାଳ ପୂର୍ବରୁ ବାଘ ଆଉ ଅଗ୍ନି ଦେବତା ଥିବା ସାଙ୍ଗ । ପ୍ରତିଦିନ ସେ ଦୁହିଁଙ୍କର ଦେଖା ନ ହେଲେ ନ ଚଳେ । ବାଘ ନିତିପ୍ରତି ଅଗ୍ନିଙ୍କ ପାଖକୁ ଯାଏ, ତାଙ୍କ ସଙ୍ଗରେ ବସି ହସ ଆଉ ଖୁସି ଗପ କରି ନିଜ ଘରକୁ ଫେରେ । ବାଘୁଣୀ ଏହ

ବରାବର ଜାଣୁଥାଏ । ଦିନେ ବାଘୁଣୀ ବାଘକୁ କହିଲା—"କହିବୋ, ତୁମେତ ସବୁଦିନେ ଅଗ୍ନିଙ୍କ ଘରକୁ ଯାଉଛ । ତାଙ୍କ ସଙ୍ଗରେ ବସି ଗପ ସପ କରି ଫେରୁଛ । କାହିଁ ସେତ ଅକାଳେ ସକାଳେ କେବେହେଲେ ଆମ ଘରକୁ ଆସନ୍ତି ନାହିଁ ।"

ବାଘ ବାଘୁଣୀ କଥା ଶୁଣିଲା । କିଛି ନ କହି ଚାଲିଗଲା ।

କିଛିଦିନ ଗଲାପରେ ବାଘୁଣୀ ଫେରି ଦିନେ କହିଲା—"ସତରେ ଭଲ ସାଙ୍ଗଟିଏ ପାଇଛ ! ସାଙ୍ଗ ସାଙ୍ଗ ବୋଲି ତୁମକୁ କିଛି ନାହିଁ । ସାଙ୍ଗ କିନ୍ତୁ ତୁମକୁ ବାସିମୁହଁରେ ପଚାରନ୍ତି ନାହାନ୍ତି । ସେ ଯଦି ପ୍ରକୃତରେ ତୁମକୁ ତାଙ୍କ ସାଙ୍ଗ ବୋଲି ଭାବୁଥାନ୍ତେ, ଦିନେହେଲେ କେବେ ତୁମ ଘରକୁ ବୁଲି ଆସନ୍ତେ ନାହିଁ ?"

ବାଘ ସବୁ ଶୁଣି ଚୁପ୍ ହୋଇ ଚାଲିଗଲା ।

ବାଘର ଏ ଢଙ୍ଗ ବାଘୁଣୀକୁ ଆଦୌ ଭଲ ଲାଗେ ନାହିଁ । ତାର ଇଚ୍ଛା—ସାଙ୍ଗମାନେ ଧନ ଦଉଲତରେ କମି ବେଶୀ ହେଲେ ମଧ୍ୟ ମନ ଭିତରେ ସମାନ ହେବା ଭଲ । ବାଘ ଅଗ୍ନିଙ୍କ ଘରକୁ ଗଲେ ସେ ମଧ୍ୟ ଦିନେ ଦିନେ ଏମାଙ୍କ ଘରକୁ ଆସନ୍ତେ, ବସନ୍ତେ, ଖୁସିଗପ କରନ୍ତେ, ବାଘୁଣୀ ତାଙ୍କର ଚରଚା କରନ୍ତା । ତେବେ ଯାଇ ଜଣାଯାନ୍ତା ଯେ ପ୍ରକୃତ ସାଙ୍ଗ—ମନ ଭିତରେ ଦୁହେଁ ସମାନ ବା ଏକାକାର ହୋଇ ଯାଇଛନ୍ତି । କିନ୍ତୁ ଏଠିତ ସେପରି କିଛି ସେ ଦେଖୁ ନାହିଁ । ତେଣୁ ବାଘୁଣୀର ଇଚ୍ଛା ଏପରି ସାଙ୍ଗ ପାଖକୁ ବାଘର ନ ଯିବା ବରଂ ଭଲ । ମାତ୍ର ବାଘ ବାଘୁଣୀର କଥାକୁ କାନାଏ ନାହିଁ ।

ଆଉଦିନେ ବାଘୁଣୀ ବାଘକୁ ଖୁବ୍ ଛଳେଇ କରି କହିଲା—"ତୁମେ ସିନା ଅଗ୍ନିଙ୍କର ସାଙ୍ଗ ବୋଲି ସବୁବେଳେ ଲଙ୍ଗୁଳ ପିଟୁଛ; ଅଗ୍ନି କିନ୍ତୁ ତୁମକୁ ବାସି ମୁହଁରେ ପଚାରନ୍ତି ନାହିଁ । ଯେତେହେଲେ ସେ ଦେବତା, ଆଉ ତୁମେ ପଶୁ । ପଶୁ ତ ପଶୁ ପୁଣି ହିଂସ୍ର ପଶୁ । ତୁମେ ଗଲଠୁଁ ସେ କ'ଣ କରିବେ ? ବସିବାକୁ ଆସନଟାଏ ଦେଉଥିବେ । ତୁମେ ସେଥିରେ ବସି ପଡ଼ି ମନେ ମନେ ଫୁଲି ଉଠୁଥିବ । ମାତ୍ର ସେ ଜାଣନ୍ତି ଯେ ତୁମର ଘର ଗୋଟାଏ ଅନ୍ଧାର ଖୋଲ । ସେଠି ପଚା ସଢ଼ା ଗନ୍ଧ । ବସିବାକୁ ଆସନ ଅକର୍ମଣିଆ ପଥର ମୁଣ୍ଡିଆ । ସେ ତୁମକୁ ତାଙ୍କ ମନ ଭିତରେ ସ୍ନେହ କି ଆଦର ତ କରୁ ନ ଥିବେ ବରଂ ଘୃଣା କରୁଥିବେ । ତା ନ ହେଲେ ସେ କେବେ ଭୁଲରେ ହେଲେ ଇଆଡ଼େ ଆସନ୍ତେ ନି ?" ଏଥର ବାଘୁଣୀର କଥା ବାଘ ମନକୁ ଛୁଇଁଲା । ସେ ସେ ଦିନ ଅଗ୍ନିଙ୍କ ଘରକୁ ଯାଇ ମୁହଁ ଶୁଖାଇ ବସିଲା ।

ଅଗ୍ନି ପଚାରିଲେ—"ବନ୍ଧୁ ହେ, କହିଲ ଦେଖି,
ତୁମ ମୁହଁଟି ଯାଇଛି ଶୁଖି ।
ଆଜି କଣ ଖାଇ ନାହଁକି ?
ମନ ମାରି ବସି ଅଛ କାହିଁକି ?"

ବାଘ କହିଲା—"ସବୁଦିନେ ଆସେ ତୁମ ଘରକୁ ମୁଁ
ଛୁଟିଣ ନ ଥାଏ ଦିନେ,
ତୁମ ସାଙ୍ଗ ବୋଲି ଏ ସାରା ସଂସାରେ
କିଏ ବା ମତେ ନ ଚିହ୍ନେ ?
ମୋହର କୁଡ଼ିଆରେ କେବେହେଲେ ଥରେ
ନ ପଡ଼ିଲା ତମ ପାଦ,

ସେ କଥା ଭାବିଲେ ମନରେ ମୋହର
ଘୋଟି ଆସଇ ବିଷାଦ ।

ପ୍ରକୃତରେ ବନ୍ଧୁ, ତୁମର ଏପରି ଆଚରଣରେ ଆମେ ଦୁଇପ୍ରାଣୀ ଦୁଃଖିତ । ମୋଠୁଁ ଅଧିକ ଦୁଃଖିତ ବାୟୁଣୀ । ତାର ବିଶ୍ୱାସ – ତୁମେ ଆମକୁ ବଡ଼ ହୀନ ଆଖିରେ ଦେଖ । ତୁମଲାଗି କୌଣସି ଜିନିସ ଆମ ଘରେ ନାହିଁ । ତେଣୁ ତୁମେ ଆମ ଘରେ ପାଦ ପକାଅ ନାହିଁ । ମୁଁ ତୁମ ଘରକୁ ଗଲେ ମତେ ସିନା ପଦେ ପଚ୍ଚାର ? ନ ହେଲେ ପଚ୍ଚାରନ୍ତ କପରି ?"

ଅଗ୍ନି କହିଲେ—"ତୁମେ ଶୁଣିଥିବ ନିଆଁ ସଙ୍ଗରେ ସାଙ୍ଗ ହେବାକୁ ଓ ନିଆଁ ସଙ୍ଗରେ ଖେଳିବାକୁ ପୁରୁଖାଲୋକେ ମନା କରନ୍ତି ତୁମେ ତ କୋଉ ଯୁଗରୁ ସାଙ୍ଗ ହୋଇ ସାରିଛ । ତୁମର ସୃଷ୍ଟି ହେବା ପରେ ପରେ ଯେଉଁଦିନ ରାତିରେ ତୁମ ଆଖି ଭିତରେ ମୋର ରୂପକୁ ମୁଁ ଦେଖିଲି, ମାନେ ତୁମ ଆଖି ଠିକ ରଡ଼ ନିଆଁ ପରି ଝଟକୁଥିଲା, ସେହିଦିନୁ ତୁମ ପ୍ରତି ମୋର ଶ୍ରଦ୍ଧା ଆସିଲା । ମୁଁ ତୁମକୁ ସାଙ୍ଗ ବୋଲି ଭାବିଲି । ତୁମେ ମଧ୍ୟ ସେହି ସୃଷ୍ଟି ଆରମ୍ଭରୁ ମୋର ସାଙ୍ଗ ହୋଇ ରହିଛ । ମୋର ଘରକୁ ନିତି ଆସୁଛ, ବସୁଛ, ହସୁଛ, ଯାଉଛ । ତୁମ ଆଖିର ସେ ତେଜ ଥିବାଯାଏ ମୋ ଶ୍ରଦ୍ଧା ସେମିତି ଅଛି, ପୁଣି କାଳକାଳକୁ ଥିବ । ଆଉ, ତୁମେ କୁହତ ଦେଖି – ମୁଁ ସବୁରି ଘରେ ଥାଏ । ମୋଲାଗି ସମସ୍ତେ ଖାଦ୍ୟ ଖାଆନ୍ତି । ମୋର ଲାଗି ଘୋର ଅନ୍ଧକାରରେ ମଧ୍ୟ ବାଟ ଦେଖନ୍ତି । ମୁଁ ନ ରହିଲେ କେହି ଚଳିପାରିବେ ନାହିଁ । ଯା ବୋଲି ମୁଁ ନିଜେ କେଉଁଠାକୁ ଯାଏ ନାହିଁ । କାରଣ ମୁଁ ଜାଣେ, ତୁମେ ମଧ୍ୟ ଜାଣ, ମୁଁ ଯାହା ଘରକୁ ଯିବି ତାର ସର୍ବନାଶ ହେବ । ସେଥିଲାଗି ମୁଁ କୁଆଡ଼େ ଯାଏ ନାହିଁ ।"

"ଖରାଦିନେ ମୁଁ ବନ ପର୍ବତରେ ବୁଲେ—ସେତେବେଳେ ଗୃହଆଡ଼ ହାଲେଲ ଦିଶେ । ତୁମେ ସେତେବେଳେ କଣ କର ମନେ କଲ ଦେଖି, ଗୁଟି ପିଟି ହୋଇ କେଉଁ ଝରଣା କୂଳରେ ଥଣ୍ଡା ଜାଗାକୁ ଯାଅ କି ନା ?"

"ଯାଅ ସାଙ୍ଗ—ବାଘୁଣୀଙ୍କୁ ବୁଝାଇ ଦେବ । ସେ ମୋ ଯିବା-ଲାଗି ଜିଦ୍ କରନ୍ତୁ ନାହିଁ । ମୁଁ ଗଲେ ତୁମର ଭଲ ହେବ ନାହିଁ ତାଙ୍କୁ କହିବ—

ଆସିବେ ଯେବେ ମୋ ବନ୍ଧୁ
ଆମ ଦିନ ଯିବ କାନ୍ଦୁ କାନ୍ଦୁ ।"

ବାଘ କହିଲା—"ମୁଁ ତ ସବୁ ବୁଝିଛି, ଏବେ ମଧ୍ୟ ବୁଝୁଛି । ମାତ୍ର ବାଘୁଣୀ ବଡ଼ ଅବୁଝା, ସେ ଜମା ବୁଝିବ ନାହିଁ । ତୁମକୁ ଆମ ଘରକୁ ନିଶ୍ଚେ ଯିବାକୁ ହେବ ।"

ଅଗ୍ନି କହିଲେ—"ତାଙ୍କର ଜିଦ୍ ରଖିବାକୁ ମୁଁ ଯିବି ସତ, ମାତ୍ର ସେଥିଲାଗି ତୁମକୁ ଟିକିଏ କାମ କରିବାକୁ ପଡ଼ିବ । ଆଉ କେହି ବନ୍ଧୁ ବାନ୍ଧବଙ୍କ ଆସିବାର ହେଲେ ଲୋକେ କଞ୍ଚା ଡାଳ-ପତ୍ରରେ ତୋରଣ କରନ୍ତି, ରାସ୍ତାକଡ଼ରେ କଞ୍ଚା ଡାଳପତ୍ର ଟାଙ୍ଗି ସଜାନ୍ତି, ଗୋଡ଼ ଧୋଇବାକୁ ଆଗ ପାଣିକୁଣ୍ଡ ସଜାଡ଼ି ରଖନ୍ତି । ମାତ୍ର ମୋପାଇଁ ସବୁ ଓଲଟା ହେବ । ପାଣି ମୋର ଆଦୌ ଦରକାର ହେବ ନାହିଁ, କାରଣ ସେ ମୋର ଶତ୍ରୁ । କଞ୍ଚାପତ୍ର କଞ୍ଚାଡାଳ ମଧ୍ୟ କୌଣସି କାମରେ ଲାଗିବ ନାହିଁ । କେବଳ ଶୁଖିଲା ପତ୍ରରେ ମୋ ଘରଠାରୁ ତୁମ ଘରଯାଏ ଗୋଟିଏ ରାସ୍ତା କରିବାକୁ ହେବ । ମୁଁ ଶୁଖିଲା ପତ୍ରର ରାସ୍ତାରେ ବଡ଼ ଆନନ୍ଦରେ ଯାଏ ।"

ବାଘ କାହିଁକି ଅଗ୍ନିଙ୍କ କଥାର ମର୍ମ ବୁଝିବ ! ସେ ଖୁସିରେ ଘରକୁ ଯାଇ ବାଘୁଣୀ ଆଗରେ ସବୁ କଥା କହିଲା । ଆର ଦିନ ବାଘ ବାଘୁଣୀ ଦୁହେଁ ଲାଗିପଡ଼ି ଶୁଖିଲା ଡାଳପତରେ ଗୋଟିଏ ଘସ୍ତା ତିଆରି କଲେ । ଅଗ୍ନି ଆସିବେ ବୋଲି ନିଜ ଘରେ ଠାକି ବସି ରହିଲେ ।



ସଞ୍ଜ ହେବା କ୍ଷଣି ଠୋ ଠା ଢୋ ଢା ଶବ୍ଦ ଶୁଣି ବାଘ ବାଘୁଣୀ ଦୁହେଁ ଚମକି ପଡ଼ିଲେ । ବାଘ ଦ୍ୱାର ମୁହଁକୁ ଆସି ଦେଖେ ତ ତାର ସାଙ୍ଗ ଅଗ୍ନି ଦେବତା ଠିଆ ହୋଇ ମୁରୁକି ମୁରୁକି ହସୁଛନ୍ତି— ତାଙ୍କ ପଛରେ ପ୍ରଚଣ୍ଡ ନିଆଁ ଲହ ଲହ ଜିଭ ମେଲେଇ ମାଡ଼ି ଆସୁଛି । ଚାରିଆଡ଼ ନାଲେଲି ଦିଶୁଛି । ବାଠ ପାଖର କାଠ, ବାଉଁଶ ଜଳି ଫୁଟି ଠୋ ଠା ଢୋ ଢା ଶବ୍ଦ କରୁଛି । ଦେଖୁ ଦେଖୁ ନିଆଁର ହୁଆ ବାଘ ଘର ଭିତରେ ପଶିଲା । ବାଘର ଘରକରଣାକୁ ଗୃଠି ଦେଇଗଲା । ବାଘକୁ ବୁଦ୍ଧି ଦିଶିଲା ନାହିଁ । ସେ ପ୍ରାଣବିକଳରେ ଝରକା ଚଇ ଗୋଟିଏ ସରୁ ବାଟରେ ଗଳି ପଦାକୁ ପଳାଇଲା । ସେହି ନିଆଁ ଧାସ ବାଘର ଦେହକୁ ଯେଉଁଠି ସିଝାଇ ଦେଇଥିଲା

ସେଠି କଳା ଦାଗ ସବୁ ରହିଗଲା । ସେହିଦିନୁ ବାଘ ନିଆଁକୁ ଦେଖିଲେ ବନ୍ଧୁ ବୋଲି ସ୍ୱାଗତ କରେ ନାହିଁ ବରଂ ବିପଦର ଆଶଙ୍କା କରେ ।



## କାଠହଣା ଚଢ଼େଇ ଗଣ୍ଟି ହାଣେ କାହିଁ କି?

[ ମରହଟ୍ଟୀ ଲୋକକଥା ]

କେଉଁ ଅପାର କାଳର କଥା । ବୁଢ଼ୀଟିଏ । ଗାଁ ସେ ମୁଣ୍ଡରେ ତାର ଘର । ନିଜର ହାତ ଗୋଡ଼, ଗୋଟିଏ ଲମ୍ବ ନାକ, ନିଜର ଶରୀରଟି ଛଡ଼ା ମୋଟ ଉପରେ ତାର ଆଉ କିଛି ନ ଥାଏ । ବଡ଼ ସକାଳୁ ଉଠି ଘରେ ତାଲା ଦେଇ ବୁଢ଼ୀ ବାହାରିଯାଏ ଗାଁଆ ଭିତରକୁ । ଏଘର ସେଘର ବାରଘର ବୁଲି ଦିନ ଦଶ ଘଡ଼ିକୁ ଘରକୁ ଫେରେ । ପେଜ ପଖାଳ ଯାହା ଥାଏ ଖାଇ ଦେଇ ପୁଣି ଯାଏ ସେ ଆସେ ଯାଇ ସଞ୍ଜବେଳକୁ । ସେ ଗାଁରେ ଆଉଡ଼ି ସାଉଡ଼ି ଏତେ ବୁଲି କଣ କରେ ଜାଣିଛ ? ଘରେ ଘରେ ବୁଲି ସବୁ ଘରର କଥା ବୁଝେ । ୟା ଘର କଥା ତା' ଘରେ 'ତା' ଘର କଥା ୟା ଘରେ କହି କଳି ଲଗେଇ ପାରିଲେ ବୁଢ଼ୀର ବଡ଼ ଖୁସି । ପଦେ କଥା ଶୁଣିଲେ ନିଜ ମନରୁ ଦଶ ପଦ ଯୋଡ଼ି କଥାକୁ ମୋଟ କରିବା ତାର କାମ । ତାରି ଲାଗି ସେ ଗାଁରେ ସବୁଦିନେ କଜିଆ – କାହାରି ସଙ୍ଗରେ କାହାରି ପଟେ ନାହିଁ । ବୁଢ଼ୀକୁ ଦେଖିଲେ କିଏ କହେ ନାରଦୀ, କିଏ କହେ ଘରଭଙ୍ଗୀ, ତାର ଲମ୍ବ ନାକ ଲାଗି କିଏ ବା କହେ ନାକ୍‌ଟୀ । ଏମିତି କେତେ ନାଁରେ ଗାଁ ଲୋକେ ତାକୁ ଡାକନ୍ତି । ସେ ଏମିତି

ଲୋକ ବୋଲି ସମସ୍ତେ ଜାଣନ୍ତି । ତଥାପି ତାର ଖଟ୍ ଚୁଙ୍ଗୁଲିରେ ସମସ୍ତେ ଚାଲି ଯାନ୍ତି, ମାତି ଉଠନ୍ତି ।

ଏ ଦୁନିଆ ଲୋକଙ୍କ ଗତିବିଧି ଦେଖିବାକୁ, ଭଲମନ୍ଦ ଜାଣିବାକୁ ପ୍ରଭୁ ତ ବେଳେ ବେଳେ ସ୍ୱର୍ଗରୁ ଆସନ୍ତି । ସେଥିଲାଗି ଶାସ୍ତ୍ର ପୁରାଣରେ ଅଛି—

ସରଗର ସୁନା ସିଂହାସନ ଛାଡ଼ି ପ୍ରଭୁ
ବେଳେ ବେଳେ, ଓହ୍ଲାଇ ଆସନ୍ତି ତଳକୁ
ଦୁନିଆ ଲୋକଙ୍କ ଢଙ୍ଗଢାଙ୍ଗ ଦେଖି
ଦେଇଯାନ୍ତି କର୍ମ ଫଳକୁ ।

ଭଲ ଲୋକ ପାଇ ଭଲ ପୁରସ୍କାର
ମନ ଖୋଲି କରି ହସେ,
ମନ୍ଦ ଲୋକ ପାଇ ସମୁଚିତ ଦଣ୍ଡ
ମୁଣ୍ଡେ ହାତ ଦେଇ ବସେ ।

କାନ୍ଧରେ ବଡ଼ ମୁଣାଟିଏ ଧରି ପ୍ରଭୁ ବୁଢ଼ା ମଣିଷ ରୂପ ଧରି ଦିନେ ସେଇ ବୁଢ଼ୀର ଗାଁରେ ପହଞ୍ଚିଲେ । ସେତେବେଳକୁ ଦିନ ଦଶ ଘଡ଼ି ହେବ । ବୁଢ଼ୀ କେତେ ଘରେ କେତେ ପ୍ରଳାପ ଘଣ୍ଟାଇ ଘରକୁ ଫେରୁଥାଏ । ବୁଢ଼ା ସେଇ ବୁଢ଼ୀକୁ ପଚାରିଲେ—

"ବୁଢ଼ୀ ମାଉସୀ, ବୁଢ଼ୀ ମାଉସୀ,
କୁଆଡ଼େ ଯାଉଛୁ ଏଡ଼େ ଧଅସି ?
ବହୁତ ଦୂରରୁ ଆସିଛି ମୁହିଁ
ଏ ଗାଆଁ ଖବର ଜାଣୁ କି ତୁହି ?"

ବୁଢ଼ୀ ହସି ହସି କହିଲା—

"ମୋ ଛଡ଼ା ଆଉ କେ ଜାଣିବରେ ବାପ,
ମୁହିଁ ତ ପହରୀ ହଏ,
କସ ଲୋଡ଼ା ତୋର ? ପଚାର କହିବ
ଜାଗାଠାରୁ ଶିରୀ ଯାଏ ।



ହାନି ଲାଭ ଭଲ ମନ୍ଦ ଖବର ମୁଁ
ରଖେ ଏ ଗାଁରେ ବୁଲି ।
ଯା' ଘରକୁ ହନେ ନ ଯିବ ରେ ବାପ,
ଲଗିବ ନାହିଁ ତା ଚୁଲି ।"

ବୁଢ଼ା କହିଲେ —

"ଲୋଡ଼ା ନାହିଁ ମୋର ଆଉ କିଛି କଥା
ଖୋଜୁଛି ଗରିବ ଜଣେ,
ଅଛି ଯେବେ କହ, ଗରିବ ଗୋଟିଏ
ଏ ଗାଆଁର କେଉଁ କଣେ ।"

ବୁଢ଼ାଙ୍କ କଥାରେ ବୁଢ଼ୀ ଚମକି ପଡ଼ିଲା । ଡମା ଡମା ଆଖି କାଢ଼ି ପଚାରିଲା— "କାହିଁକି, ଗରିବ ଲୋକଟିଏ ତୋର କି କାମ ? କିଏ ସିନା ଧନୀ, ଶେଠ, ବଡ଼ ଲୋକଙ୍କ ଘର ବୁଝି ସେଠାକୁ ଯାନ୍ତି । ତୁ ଗରିବ ଲୋକ ଖୋଜୁଛୁ କିଆଁ ?"

"ହଁ, ମାଉସୀ ମୋର ଗରିବ ଲୋକଟିଏ ଲୋଡ଼ା । ଏ ମୁଣାଟି କାନ୍ଧରେ ବୋହି ବୋହି ମୁଁ ଥକି ପଡ଼ିଲଣି । ଗରିବଟିଏ ଦେଖି ତା ହାତରେ ଏହା ଦେଇ ଦେଲେ ମୁଁ ଖଲାସ ପାଇଯିବି ।"

ବୁଢ଼ୀ ବୁଢ଼ାଙ୍କ କାନ ପାଖକୁ ମୁହଁ ଲଗାଇ ଥିରିକରି ପଚାରିଲା, "ବାପ, ସେ ମୁଣାରେ କଅଣ ଅଛି କି ?"

ବୁଢ଼ା କହିଲେ— "ଏଥିରେ କ'ଣ ଅଛି ମୁଁ ଜାଣେ ନାହିଁ, କି ସେ କଥା ଜାଣିବାକୁ ମନକରୁ ନାହିଁ । ତାହା ଜାଣିବାକୁ ମନ କଲେ ମୋ ଉପରକୁ ବିପଦ ଆସିବ । ଖାଲି ଏତିକି ଜାଣେ ଯେ, କେହି ଦୁଃଖୀ ଦରିଦ୍ର ଲୋକଙ୍କୁ ଏ ମୁଣାଟି ମିଳିଲେ ତା ଭାଗ୍ୟ ବଦଳି ଯିବ ।"

ଏତିକି ଶୁଣୁ ଶୁଣୁ ବୁଢ଼ୀ ତଳେ ବସି ପଡ଼ି ମୁଣ୍ଡରେ ହାତ ଦେଇ ବାହୁନିବାକୁ ଲଗିଲା—

"ମୋଠୁଁ ଗରିବ ଏଇ ଗାଁରେ କାହାଁକି ସାରା ସଂସାରରେ ନ ଥିବେ । ମୋର ବାଲବାଡ଼ି ନାହିଁ, ଘର ଦ୍ୱାର ନାହିଁ, ଖାଇବାକୁ ପୋଡ଼ା ମୁଠି ନାହିଁ କି ପୋଷଣାହାରୀ କେହି ଜଣେ ହେଲେ ନାହିଁ । ନିତାନ୍ତ ଗରିବ ଅବସ୍ଥିତ ହୋଇ ମୁଇଁ କେବଳ ବଞ୍ଚି ରହିଛି ।"

ବୁଢ଼ା କହିଲେ, "ମାଉସୀ, କାନ୍ଦୁଛୁ କାହିଁକି ? ତୁଇ ଯଦି ଖୁବ୍ ଗରିବ ତେବେ ଏ ମୁଣାକୁ ତୁ ହେଲେ ନେ । ତୋର ଭାଗ୍ୟ ବଦଳି ଯାଉ, ମୋଠୁଁ ବୋଝ ଖଲାସ ହେଉ । ମୁଁ ଏ ମୁଣାଟି ତତେ ଦଉଛି ନେ—ହେଲେ, ଗୋଟିଏ କଥା ତୁ ମାନିଲେ ଏ ମୁଣା ତୋ ପାଖରେ ରହିବ । ତୋର ଭାଗ୍ୟ ବଦଳାଇବ । ନ ମାନିଲେ ଏ ମୁଣା ପୁଣି ମୋ ପାଖକୁ ଫେରି ଆସିବ ।"

ବୁଢ଼ାଙ୍କ ମୁହଁରୁ ଏହା ଶୁଣୁ ଶୁଣୁ ବୁଢ଼ୀ ମୁଣାଟି ଝିଙ୍କିନେଇ ଜାବୁଡ଼ି ଧରିଲା । କହିଲା—"କଣ କଥା ଅଛି କହ—ମୁଁ ନିଶ୍ଚୟ ମାନିବି ।"

ବୁଢ଼ା କହିଲେ—"ସେମିତି କଛି କଷ୍ଟ କଥା ନୁହେଁ । ଖାଲି ଏତିକି, ନିଜ ଘରେ ନ ପହଞ୍ଚିବା ଯାଏ, ବାଟରେ, ଘାଟରେ ଏ ମୁଣାକୁ ଖୋଲିବୁ ନାହିଁ, କି ଏଥିରେ କ'ଣ ଅଛି ଦେଖିବାକୁ ଠିକ ଠିକ ହେବୁ ନାହିଁ । ଯଦି ଖୋଲିଦେଉ ତେବେ ତୋ ଉପରକୁ ଆସିଯିବ ବଡ଼ ବିପଦ । ଆଉ ଏ ମୁଣା ଆସିଯିବ ମୋ ହାତକୁ ।"

"ନାହିଁ ନାହିଁ ବାପ ସେ ପରି ଭୁଲ ଜମା ମୋ ଦେଇ ହେବ ନାହିଁ ।" ଏହା କହି ମୁଣାଟି ଜାବୁଡ଼ି ଧରି ବୁଢ଼ୀ ଚାଲିଲା ତା ନିଜ ଘରକୁ—

ବାଟରେ ଗଲାବେଳେ ତା ମନରେ ଥରକୁ ଥର ଚିନ୍ତା ଆସୁଥାଏ । 'ଏ ମୁଣାରେ ସତେ କ'ଣ ଅଛି ।' ଟଙ୍କା ସୁନା, କି ପିଠାପଣା କି ଲୁଗା ପଟା କଣ ଅଛି ଯାହା କି ମୋର ଭାଗ୍ୟ ବଦଳେଇ ଦେବ ?' ଏହି ଭାବନାରେ ବୁଢ଼ୀର ଚାଲିଚା ଟିକିଏ ଧିମେଇ ଯାଏ । ସେ ଠିଆ ହୋଇ ମୁଣା ଖୋଲିବାକୁ ମନ କରେ । ଚାରିଆଡ଼କୁ ଅନାଇ ଦେଖେ । ବୁଢ଼ାଙ୍କ କଥା ମନେ ପଡ଼ିଗଲେ କିଛି ନ କରି ଚାଲେ ଘରମୁହାଁ । ନଈକୂଳ ଝରରେ ଚାଲି ଚାଲି ବୁଢ଼ୀ ହାଲିଆ ହେଲାରୁ ଗୋଟିଏ ଗଛ ଗୁଣ୍ଡିରେ ବସି ପଡ଼ିଲା । ମୁଣାଟିକୁ ଆଗରେ ଥୋଇ ଥାଏ । ଚାରି ଆଡ଼କୁ କନ କନ ହୋଇ ଅନାଇ ବୁଢ଼ୀ ଝଟ୍ କରି ମୁଣାର ମୁହଁକୁ ଖୋଲିଦେଲା । ଖୋଲିଦେଇ ଆଉ ଯିବ କୁଆଡ଼େ ! ମୁଣାରୁ ଲକ୍ଷ ଲକ୍ଷ ପୋକ ବାହାରି ସାଲୁ ସାଲୁ ହୋଇ ଏଣେ ତେଣେ ପଳାଇଲେ । ବୁଢ଼ୀର ହାତ ମୁଣ୍ଡରେ ଚଢ଼ିଗଲେ । କେତେ ଗଛ ଉପରକୁ ଉଠିଗଲେ । ଆଉ କେତେ ପାଖ ଆଖର ବଣବୁଦା ଭିତରକୁ ମାଡ଼ିଗଲେ । ବୁଢ଼ୀ ଆଖି ତରାଟି ହାପୁ ହାପୁ କଲା, ଛାତିରେ ବାଡ଼େଇ ହେଲା, ତଳେ ମୁଣ୍ଡ ପିଟିଲା । ନତାନ୍ତ ବେଳକୁ ମୁଣାର ମୁହଁ ବନ୍ଦ କରିଦେଲା । ସେତେବେଳକୁ ଅଧେ ପୋକ ଯୋକ ଏଣେ ତେଣେ ପଳେଇ ଗଲେଣି । ଠିକ୍ ସେତିକବେଳେ ବୁଢ଼ା ସେଠି ପହଞ୍ଚି ଗଲେ — ବୁଢ଼ୀକୁ କହିଲେ — "ମାଉସୀ, ମୁଁ କହିଥିଲି କ'ଣ, ତୁ କଲୁ କ'ଣ ?"

ଲାଜରେ ବୁଢ଼ୀ ଆଉ ମୁହଁ ଦେଖାଇ ପାରିଲା ନାହିଁ । ମୁହଁ ତଳକୁ ପୋତି ନିଜର ଲମ୍ବା ନାକଟି ସୁଁ ସୁଁ କରି ବୁଢ଼ାଙ୍କ ହାତକୁ ମୁଣାଟି ବଢ଼ାଇ ଦେଲା ।

ବୁଢ଼ା ଟିକିଏ ଚଡ଼ା ଗଳାରେ କହିଲେ — "ମାଉସୀ, ତୁ କଣ ଖେଳଘର ଭାବିଛୁ କି ? ଏ ମୁଣାରୁ ତ ଅଧେ ଜିନିଷ ନାହିଁ । ମୁଁ

ଏ ଅଧା ମୂଣ୍ଡା ନେଇ କ'ଣ କରିବ ? ମୋ ମୂଣ୍ଡା ଯେମିତି ଥିଲା ସେମିତି ପୂରା କରି ଦେ ।"

ବୁଢ଼ୀ—ପୋକ ଯୋକ ଗୁଡ଼ା ସାଲୁ ସାଲୁ ହୋଇ କେତେ କୁଆଡ଼େ ଗଲେଣି କ'ଣ କରିବ ବାପ !

ବୁଢ଼ା — କଣ କରିବୁ ? ଭଲଗତି ଅଛି ଯେବେ ଏ ମୂଣ୍ଡାରୁ ଯେତେ ପୋକ ଯୋକ ଯାଇଛନ୍ତି ସବୁତକ ଧରି ମୂଣ୍ଡାକୁ ପୂର୍ଣ୍ଣ କରିଦେ । ନ ହେଲେ ତୋର ନିସ୍ତାର ନାହିଁ ।

ବୁଢ଼ୀ—ବାପା, ମୁଁ ତ ନିଆଶ୍ରୀ ବୁଢ଼ୀ ଲୋକ । କେତେ ସେ ପୋକଙ୍କୁ ସାଉଁଟିବି ? ସେ କଣ ଧରା ପଡ଼ୁଛନ୍ତି ?

ବୁଢ଼ା—ତେବେ ତୁ ଆଜଠୁଁ ଚଡ଼େଇ ହୋଇ ଯା—ପୋକ ଯୋକ ଧରି ଖାଇ ବଞ୍ଚିବା ତୋର କାମ ହେଉ ! ଯେତେ ପୋକଯୋକ ଗଛରେ ଚଢ଼ି ଯାଇଛନ୍ତି ତାଙ୍କୁ ପାଇବା ଲଗି ଗଛର ଗଣ୍ଡିକୁ ଠକ ଠକ କରି ହାଣୁଥା ।



ସେହି ଦିନୁ ସେ ବୁଢ଼ୀ କାଠହଣା ଚଢ଼େଇ ହୋଇଗଲା । ତାହାର ଲମ୍ବ ନାକଟି ହେଲା କାଠ ହଣାର ଲମ୍ବ ଥଣ୍ଟ । ଯୁଗ ଯୁଗ ଧରି କାଠ ହଣା ସବୁଦିନେ ଠକ୍ ଠକ୍ କରି ଗଛ ଗଣ୍ଡିକୁ ହାଣୁଛି ।

୮

## କୋକଶିଆଳର ଲାଙ୍ଗୁଳ ଅଗ ଧଳା କାହିଁକି ?

[ ନରୱେ ଦେଶର ଲୋକକଥା ]

ଘନ ଜଙ୍ଗଲ ପାଖରେ ଗ୍ରାମଟିଏ । ସେ ଗାଁରେ ଘର କରି ଥାଏ ଗୋଟିଏ ବୁଢ଼ୀ । ବୁଢ଼ୀର ପିଲାଝିଲା କେହି ନ ଥାନ୍ତି । ବହୁତ ଗୁଡ଼ଏ କୁକୁଡ଼ା ଆଉ ପଲେ ଘୁଷୁରି ବୁଢ଼ୀ ପାଳିଥାଏ । ସକାଳୁ ଉଠି ସେହି ପୋଷା ଜୀବଙ୍କ କାମ କରିବାରେ ସଞ୍ଜବତି ଲାଗି-ଯାଏ । ବୁଢ଼ୀର ଦିନ ସରିଯାଏ । ଏତେଗୁଡ଼ଏ ଜୀବଙ୍କୁ ଖୋଇ ପେଇ ସେମାନଙ୍କ ଅଡ଼ାକୁ ସଫା ସୁତୁରା କରି ସେମାନଙ୍କୁ ଚରେଇ ବୁଲେଇ ଆଣିବା କିଛି ସହଜ କାମ ନୁହେଁ । ନିଜର ଝିଅପିଲା ପାଞ୍ଚୋଟି ଥିଲେ ତ ବୁଢ଼ୀ ପୁଣି ସେମାନଙ୍କର ସବୁ କାମ କରୁଥାନ୍ତା ! ଝିଅପିଲା କେହି ନ ଥିବାରୁ ବୁଢ଼ୀ ଏହି ଜୀବଜନ୍ତୁଙ୍କର କାମ କରିବାରେ ମନକଷ୍ଟ କରେ ନାହିଁ ବରଂ ଆନନ୍ଦ ପାଏ । ସାରା ଜୀବନଟା ଏମିତି କରି କରି ଯେତେବେଳେ ବଳ କମି ଆସିଲା— ବୁଢ଼ୀ ଆଉ କାମକୁ ପାରିଲା ନାହିଁ । ମନର ଶ୍ରଦ୍ଧା ଲାଗି ସବୁ କରିବାକୁ ବାହାରେ ସତ ମାତ୍ର ତା ହାତ ଗୋଡ଼ ନାରାଜ ହୁଅନ୍ତି । ନିଜର ଅବସ୍ଥା ବୁଝି ବୁଢ଼ୀ ଗୋଟିଏ ଗୃହକର ରଖିବାକୁ ମନ କଲା । ବିଶ୍ୱାସୀ ଗୃହକରଟିଏ ଖୋଜିଲା ।

ବୁଢ଼ୀର ଏତେ କଥା ଭିତରେ ଶେଷ କେତେ ପଦ ଗଧିଆକୁ ଖୁବ ମିଠା ଲାଗିଲା । ସେ କାନରେ ଶୁଣୁ ଶୁଣୁ ତା ଜିଭରୁ ଲାଳ ଧାରେଟାପା ଗଡ଼ି ପଡ଼ିଲା ତଳେ ।

ଗଧିଆ କହିଲା—"ମାଉସୀ, କିଛି ଚିନ୍ତା ନାହିଁ । ମୋ ବାପ ଅଜା ତିନି ପୁରୁଷ ଏଇ କାମ କରୁଥିଲେ । ମୁଁ ତାଙ୍କଠୁଁ ଜନ୍ମ ହୋଇ ଏତକ ପାରିବି ନାହିଁ ? ବେଶ୍ ପାରିବି ।"

ବୁଢ଼ୀ ପଚାରିଲା—"ଆଚ୍ଛା, ତୁ ମୋ ଘୁଷୁରି ଆଉ କୁକୁଡ଼ାଙ୍କ ସଙ୍ଗରେ କଥା ହେବୁ କିପରି ?"

ଗଧିଆ କହିଲା—"ହୁଆ ହୁଆ ହୁହୁ···"

ବୁଢ଼ୀ କହିଲା—"ନାହିଁରେ ବାପ, ତୋ ଦେଇ ହେବ ନାହିଁ । ତୋର 'ହୁଆ ହୁଆ' ଶୁଣିଲେ ଭୟରେ ମୋ ଘୁଷୁରି ଆଉ କୁକୁଡ଼ାଙ୍କ ପେଟରୁ ଛୁଆ ଖସିପଡ଼ିବ । ତୁ ତୋ ବାଟରେ ଯା—"

ଗଧିଆ ବୁଢ଼ୀ ଆଡ଼କୁ ଟିକିଏ ଚାହିଁ ଚାଲିଗଲା ।

ଆଉ କିଛି ଦୂର ଗଲା ପରେ ବୁଢ଼ୀ ଗୋଟିଏ କୋକିଶିଆଳକୁ ଦେଖିଲା । ତାକୁ ପଚାରିଲା—

"ହଇରେ କୋକି—
ଶୁଣିଚ ମୁଁ ତୋର ଅଛି ଚାଲିକି ।
ଚାକର ଗୋଟିଏ ଖୋଜୁଛି ମୁହିଁ,
ପାରିବୁ କି ମୋର ଚାକର ହୋଇ ?
ଅଛନ୍ତି ମୋର ଘୁଷୁରି କୁକୁଡ଼ା
ତାଙ୍କ କାମ ଲାଗି ଚାକର ଲୋଡ଼ା ।
ଖୋଇବୁ ପେଇବୁ ପାଳିବୁ ତାଙ୍କୁ
ନେଇ ନେବୁ ତୁ ବଣ ଆଡ଼କୁ ।"

କୋକ କହିଲା—"ବାପ ଅଜା ମୋର କରି ଏ କାମ
ରଖି ଯାଇଛନ୍ତି ତାଙ୍କର ନାମ ।
ମନେ ରଖି ନିତ ତାଙ୍କର କଥା
ବତାଇବ ଯାହା କରିବି ମୁଁ ତା ।"

ବୁଢ଼ୀ ପଚାରିଲା—"ଆଚ୍ଛା, ତୁ ମୋ ଘୁଷୁରି ଓ କୁକୁଡ଼ାଙ୍କ ସଙ୍ଗରେ କଥା ହେବୁ କିପରି ?"

କୋକ କହିଲା—"ମୁଁ ତୁମ ସଙ୍ଗରେ ଯେମିତି କଥା ହେଉଛି, ସେମାନଙ୍କ ସଙ୍ଗରେ ଠିକ୍ ସେମିତି କଥା ହେବ । ନ ହେଲେ ତୁମେ ନିଜେ ସେମାନଙ୍କ ସଙ୍ଗରେ ଯେମିତି କଥା ହୁଅ, ଠିକ୍ ସେମିତି କଥା ମଧ୍ୟ ହୋଇ ପାରିବ ।"

ବୁଢ଼ୀର ମନ ଏଥର ଖୁବ୍ ମାନିଗଲା । ସେ ବୁଝିଗଲା ଯେ କୋକ ଯଦି ମୋର ଭଳି କଥା ହେବ ତେବେ ମୋର କୁକୁଡ଼ା ଆଉ ଘୁଷୁରିଗୁଡ଼ିକ ଖୁସି ହେବେ ପଛେ ଡରିବେ ନାହିଁ । ସେ କୋକ-ଶିଆଳକୁ ଚାକର କରି ରଖିନେଲା । ବୁଢ଼ୀ ପାଖରେ ଚାକର ରହି କୋକ ବୁଢ଼ୀର ମନ ମନେଇ କାମ କଲା । ବୁଢ଼ୀ ମଧ୍ୟ ଦିନକୁ ଦିନ କୋକକୁ ଅଧିକ ବିଶ୍ୱାସ କଲା । ସବୁ ଭାର କୋକ ଉପରେ ଦେଇ ବୁଢ଼ୀ ନିଶ୍ଚିନ୍ତରେ ରହିଲା ।

କୋକ ଏପରି ମୂଳଦୁଆଟି ପକାଇ ଦେଇ ତେଣିକି ତା କାମରେ ଲାଗିଲା । ଆଗ ଆରମ୍ଭ କଲା ସାନ ସାନ କୁକୁଡ଼ା ଛୁଆରୁ । କାରଣ ସେଗୁଡ଼ାଙ୍କର ପର କଅଁଳ ନ ଥାଏ । ରଙ୍ଗ ଫିଟି ନ ଥାଏ । [illegible] ଫୁଟି ନଥାଏ । ପଲ ପଲ ହୋଇ ସବୁବେଳେ ମାଆ ପେଟ [illegible] ତଳେ ବୁଲି ଅଧାରୁ ଖୁଣ୍ଟି ଶିଖନ୍ତି । ତାଙ୍କ ସଂଖ୍ୟା କମୁ ଛି କି

କଣ ହେଉଛି ଜାଣି ହୁଏ ନାହିଁ । କୋକ ତାଙ୍କର ନରମ ମାଉଁସରେ ଆଗ ପାଟି ପକେଇଲା ।

କଅଁଳ କୁକୁଡ଼ାର ସ୍ୱାଦ ପାଇ କୋକର ପାଟି ଠକ ଠକ ହେଲା ଗୋଟିଏ ସାନ ଦୃତୁରିଛୁଆ ଚାଖିବାକୁ । ସେ ଦିନେ ସାନ ଦୃଷ୍ଟୁରିଛୁଆଟିଏ ପାଟିକି ପକେଇ ଦେଲା । ବୁଢ଼ୀ ସିନା ସାନ କୁକୁଡ଼ା ଛୁଆଙ୍କ କମିଯିବା କଥା ଜାଣିପାରୁ ନ ଥିଲା । ଦୃଷ୍ଟୁରିଛୁଆକୁ ନ ଦେଖି ପଚାରିଲା, "ସାନ ଦୃଷ୍ଟୁରିଛୁଆଟି କାହିଁ ଗଲା ?"



କୋକ କହିଲା, "ସେ ମାଆ ସଙ୍ଗରେ ବଣକୁ ଯାଇଥିଲା, ବାଟ ବଣାହୋଇ ରହିଗଲା ଫେରି ପାରି ନାହିଁ ।" ଆଉ ଦିନେ ବୁଢ଼ୀ ରାତରେ ଦୁଧ ଡାଟିଆ ଧରି ପିଇବାକୁ ଯାଉଛି, କ'ଣ ଶବ୍ଦ କୁକୁଡ଼ା ଅଡ଼ା ଭିତରକୁ ଗଲା । ଧଡ଼ା ଖୋଲିଲାକ୍ଷଣି ଦେଖିଲା, କୋକ କଣ କରୁଛି ନା ମୁହଁରେ ଗୋଟିଏ ବଡ଼ ଗଞ୍ଜାକୁ କାମୁଡ଼ି ଧରି ବଣ ଆଡ଼କୁ ପଳାଉଛି ।

ଏହା ଦେଖି ବୁଢ଼ୀର ଭାରି ରାଗ ହେଲା । ବୁଢ଼ୀ ସେ ଦୁଧ ଡାଟିଆ ଧରି କୋକ ପଛରେ ଗୋଡ଼ାଇଲା । ରାଗରେ ଦୁଧ ଡାଟିଆଟି କୋକ ଉପରକୁ ଫିଙ୍ଗିଦେଲା । ଡାଟିଆଟି ଖୁବ୍ ଜୋରରେ କୋକ ଦେହରେ ବାଜି ଭାଙ୍ଗିଗଲା । କୋକ ଡାଟିଆ ମାଡ଼ ଖାଇ ବୋବେଇବାରୁ ଗଞ୍ଜାଟି ତା ମୁହଁରୁ ଖସି ଚାଲିଗଲା । ଦୁଧତକ କୋକର ଲାଞ୍ଜରେ ପଡ଼ି ତା ଲାଞ୍ଜ ଅଗକୁ ଧଳା କରିଦେଲା ।

ନରୱେର ଲୋକେ କୋକଶିଆଳଟିଏ ଦେଖିଲେ ଏହି କଥାଟି କହନ୍ତି ।



## ସୂର୍ଯ୍ୟ ଚନ୍ଦ୍ର ସୃଷ୍ଟି ହେଲେ କାହିଁକି ?

[ କେରଳୀ ଲୋକକଥା ]

ହଜାର ହଜାର ବର୍ଷ ଆଗର କଥା । ସେତେବେଳେ ନୂଆ ହୋଇ ଏ ପୃଥିବୀ ସୃଷ୍ଟି ହୋଇଥାଏ । ଜଣେ ପୁରୁଷ ଆଉ ଜଣେ ସ୍ତ୍ରୀ ଗୋଟିଏ ଘରେ ରହୁଥାନ୍ତି । ସେହି ସ୍ୱାମୀ ସ୍ତ୍ରୀ ଦୁହିଁଙ୍କ ସଙ୍ଗରେ ଥାଏ ତାଙ୍କର ପୋଷା କୁକୁରଟିଏ । ସ୍ୱାମୀ ସ୍ୱଭାବରେ ଖୁବ୍ ଡେଙ୍ଗୁର୍ଯ୍ୟାନ୍ । କଥା କଥାକେ ଲାଲ ହୋଇଯିବା ତାଙ୍କର ଅଭ୍ୟାସ । ସ୍ତ୍ରୀଟି କିନ୍ତୁ ଭାରି ଥଣ୍ଡାସ୍ୱଭାବର । ସେ ନିଜର ସ୍ୱାମୀଙ୍କୁ ଖୁବ୍ ଭକ୍ତି କରେ, ତାଙ୍କ କଥାକୁ ଅକ୍ଷରେ ଅକ୍ଷରେ ମାନି ଚଳେ । ସ୍ୱାମୀ କୌଣସି କାମରେ ବାହାରକୁ ଗଲେ ସେ ଆସିଲା ବେଳକୁ ତାଙ୍କ ଗୋଡ଼ ଧୋଇ ଦେବା ପାଇଁ ପାଣି ଧରି ଠିଆ ହୋଇଥାଏ । ସେ ପହଞ୍ଚିଲା କ୍ଷଣି ପାଦ ଧୋଇ ଦିଏ । ନିଜର ପଣତ କାନିରେ ପାଦ ପୋଛି ଦିଏ । ସ୍ୱାମୀ ଘରେ

ନ ଥିଲା ବେଳେ ସେ ଘରୁ ଗୋଡ଼ କାଢ଼ି କୁଆଡ଼େ ହେଲେ ଯାଏ ନାହିଁ । ସେପରି କରିବାକୁ ସ୍ୱାମୀଙ୍କର ଆଦେଶ ବି ଥାଏ ।

ଥରେ ସ୍ୱାମୀ କୌଣସି କାମରେ ବାହାରକୁ ଯାଇଥିଲେ । ସ୍ତ୍ରୀ ଦାଣ୍ଡ ଦରଜା ବନ୍ଦ କରି ଘର ଭିତରେ ଥିଲା । ଶୁଣିଲା କିଏ ଦାଣ୍ଡ କବାଟରେ ଖଟ୍‌ଖଟ୍ କରୁଛି । କବାଟ ଖୋଲି ଦେଖେ ସେ ତା ନିଜ ମାଆର ଦାସୀ ଠିଆ ହୋଇଛି । ସ୍ତ୍ରୀକୁ ଦେଖି ଦାସୀ କହିଲା—

"ମାଆ ପଡ଼ିଛନ୍ତି ମଲା ବିଛଣାରେ
ବହେ ଅଣଗୃଣ ପବନ,
ମନ କରୁଛନ୍ତି ଦେଖିବେ ତୁମକୁ
ଛାଡ଼ିବା ଆଗରୁ ଜୀବନ ।
ଦେଖଗୋ, ପଠାଇଲେ ତୁମ ନିକଟ
ସାଥିରେ ନେବାକୁ କହିଛନ୍ତି ମାଆ
କରି ମୋତେ କେତେ ଆକଟ ।"

ସ୍ତ୍ରୀ କହିଲା—

"ସ୍ୱାମୀ ଦେବତା ମୋ ନାହାନ୍ତି ଏକ୍ଷଣି
ଏକା ଅଛି ମୁହିଁ ଏଥେ,
ସେ ନ ଥିଲା ବେଳେ ପଦାକୁ ଯିବାକୁ
ମନା କରିଛନ୍ତି ମୋତେ ।
କହିବ, ମାଆକୁ ବୁଝାଇ କରି
ଥରେଯାଇ ତାଙ୍କୁ ଦେଖି ଆସିବାକୁ
ମୋ ମନ ବିକଳ ଭାରି ।"

ଦାସୀ ଲେଉଟି ଗଲା । ପୁଣି ଘଡ଼ିକ ପରେ ଫେରି ଆସି କହିଲା – "ମାଆଙ୍କର ଅବସ୍ଥା ଆହୁରି ଖରାପ ହେଲାଣି । ବୁଢ଼ୀଙ୍କର ଆଉ କଥା ନାହିଁ । ହାତ ଗୋଡ଼ରୁ ନାଡ଼ ଛାଡ଼ି ଗଲାଣି । ତଣ୍ଟିରେ କଫ ଘଡ଼ ଘଡ଼ ହେଉଛି । ନାକରେ ନିଶ୍ୱାସ ଯାଉଛି ଯାହା ସେତିକି । ବୁଢ଼ୀ ଆଖି ଦୁଇଟିରେ କେବଳ ଚାହିଁ ରହିଛନ୍ତି ତୁମକୁ । ତୁମକୁ ଥରେ ଦେଖିଦେଲେ ତାଙ୍କ ପ୍ରାଣପକ୍ଷୀ ଉଡ଼ିଯିବ । ତୁମେ ବସିଲାଠୁଁ ଉଠିଆସ ।"

ଝିଅ କହିଲା –"ମୋର ସ୍ୱାମୀ ଦେବତାଙ୍କ ସ୍ୱଭାବ ତୁମେ ଜାଣି ନାହିଁ । ସେ ମତେ ବରାବର ମନା କରନ୍ତି ଯେ, ସେ ନ ଥିଲାବେଳେ ମୁଁ ଏ ଘରୁ ଗୋଡ଼ କାଢ଼ି ପଦାକୁ ଯିବ ନାହିଁ । ମୁଁ ମଧ ତାଙ୍କୁ ସେଇଠା କରିବାକୁ ହଁ କରିଛି । ସେତିକି ମୋର ହୋଇଛି କଣ୍ଟକ, ନ ହେଲେ ମା' କଥା ଶୁଣିଲାବେଳଠୁଁ ମୁଁ ଦଣ୍ଡେ ହେଲେ ବିଳମ୍ବ ନ କରି ଯାଆନ୍ତିଣି । ତା' କଥା ଭାବି ମୋ ମନରେ କୋହ ଉଠୁଛି— କଣ କରିବ, ମୁଁ ନାଚାର୍ । ତୁ ଯାଆ । ସେ ଘରେ ପାଦ ଦେଲା କ୍ଷଣି ମୁଁ ତାଙ୍କୁ କହିଦେଇ ତୋ ପଛେ ପଛେ ଯାଉଛି ।"

ଦାସୀ ଚାଲିଗଲା—ତେଣେ ବୁଢ଼ୀର ଅବସ୍ଥା ଦେଖି ପୁଣି ଫେରିପଡ଼ି କହିଲା—

"ଯାହା ଗରଭରୁ ଜନମ ଲଭିଲ
ମଣୁଛ ତାହାକୁ ଇତର
ତୁମ ହୃଦ ଏଡ଼େ ପଥର ?

ରହିତ ଗଲାଣି ସବୁ ଅଙ୍ଗ ଖାଲି
ନାକରେ ଯାଉଛି ନିଶ୍ୱାସ

ତୁମକୁ କେବଳ ଦେଖିବା ପାଇଁକି
ମନରେ ରହିଛି ବିଶ୍ୱାସ ।

ନ ଦେଖିବା ଯାଏ ଯାଉନି ଜୀବନ
ଦେଉଛି କଷଣ ବହୁତ,
ଚାଲିଯାଇ ତୁମେ ଫେରିତ ଆସନ୍ତି
କଥା ପଦେ କହୁ କହୁତ ।

ଦେଖ ଗୋ, ଉଛୁର ନ କର ଆଉ
ମାଆ ପରି ସିଏ ତାହାର ପାଇଁକି
ଯାହା ହେବ ପଛେ ହେଉ ।"

ଦାସୀର କଥାରେ ଏଥର ଝିଅ ଥୟ ହୋଇ ପାରିଲା ନାହିଁ । ମନେ ମନେ ଭାବିଲା—"ମାଆ ମୋର ଦୁଃଖ ପାଉଛି, ମୋଲାଗି ତା ଜୀବନ ଯାଉ ନାହିଁ । କଣ୍ଠାଗତ ପ୍ରାଣ ତାକୁ କଲବଲ କରୁଥିବ । ପ୍ରକୃତରେ ମୁଁ ଦଉଡ଼ି ଯାଇ ଦଣ୍ଡେ ହେଲେ ତାକୁ ଦେଖା ଦେଇ ସ୍ୱାମୀ ଫେରି ଆସିବା ଆଗରୁ ପହଞ୍ଚି ଗଲେ ତ ହୁଅନ୍ତା ! ଦାସୀ ପ୍ରଥମରେ ମତେ ଏ ଖବର ଦେଲାଷଣି ମୁଁ ଯଦି ଚାଲି ଯାଇଥାନ୍ତି, ମାଆକୁ ଦେଖାଦେଇ ଦେଖି କେତେବେଳୁ ଫେରନ୍ତିଣି । ମୋ ଯିବା କଥା କେହି ଜାଣି ନ ଥାନ୍ତେ । ମଣିଷ ସିନା ଜାଣି ନ ଥାନ୍ତେ ? କିନ୍ତୁ ସମସ୍ତଙ୍କ ଉଢ଼ାଳରେ ଯେଉଁ ଆଖି ସବୁ ଦେଖୁଛି, ସେତ ଜାଣିଥାନ୍ତା ! ମୁଁ ତ ମୋର ପ୍ରତିଜ୍ଞା ଭଙ୍ଗ ଦୋଷରେ ଦୋଷୀ ହୋଇଥାନ୍ତି । ଏବେ ତାହାହିଁ ହେବ । ହେଉ ପଛେ, ମାଆର ଦୁଃଖ ପାଇଁ ଏପରି ଅପରାଧକୁ ବରଣ କରି ମୁଁ ଚାଲିଲି—"

ଏହା କହି ସେ ଦୌଡ଼ି ଦୌଡ଼ି ମାଆ ପାଖରେ ପହଞ୍ଚିଲା । ଯମଦୂତଙ୍କୁ ଦେଖି ମାଆର ଯେଉଁ ମୁହଁ କଳା ପଡ଼ି ଯାଉଥିଲା, ଝିଅକୁ ଦେଖି ସେ ମୁହଁ ସରସ ହୋଇଗଲା; ଓଠରେ ଦେଖା ଦେଲା ଟିକିଏ ହସ । ସଙ୍ଗେ ସଙ୍ଗେ ବୁଢ଼ୀର ଆଖି ଦୁଇଟି ସବୁଦିନ ଲାଗି ବନ୍ଦ ହୋଇଗଲା ।

ଝିଅ ସଙ୍ଗେ ସଙ୍ଗେ ନିଜ ଘରକୁ ଦୌଡ଼ି ଦୌଡ଼ି ଆସି ଦେଖେ ଯେ ସେ ପହଞ୍ଚିବା ଆଗରୁ ତାର ସ୍ୱାମୀ ଘରକୁ ଫେରିଛନ୍ତି । ରାଗରେ ତାଙ୍କ ଆଖିରୁ ସତେ ଯେମିତି ନିଆଁ ବାହାରୁଛି । ସ୍ତ୍ରୀକୁ ଦେଖିଲାକ୍ଷଣି ସ୍ୱାମୀ ଗର୍ଜନ କରି କହିଲେ, "ବିଶ୍ୱାସଘାତିନୀ, ମୋର ଅନୁମତି ନ ନେଇ ବାହାରକୁ ଗଲୁ କାହିଁକି ?"

ସ୍ତ୍ରୀ ବିଚାରୀ ଭୟରେ ସେତେବେଳକୁ ଜଡ଼ସଡ଼ ହୋଇ ସାରିଥିଲା । ସ୍ୱାମୀଙ୍କ ଗର୍ଜନରେ ସେ ଆଉ ସେଠି ଥୟ ହୋଇ ରହି ପାରିଲା ନାହିଁ । ଘରୁ ବାହାରି ସେ ଦୌଡ଼ି ପଳାଇଲା ।

ସ୍ୱାମୀ ସ୍ତ୍ରୀର ପଛେ ପଛେ ଗୋଡ଼ାଇଲେ । ଇମିତି ଗୋଡ଼ା-ଗୋଡ଼ି ହୋଇ ସଂସାରଯାକ ବୁଲିଲେ । ସେମାନଙ୍କର ଦୁଃଖ ଦେଖି ଈଶ୍ୱର କଣ କଲେ ନା ସେ ସ୍ତ୍ରୀଟିକୁ ଚନ୍ଦ୍ର କରି-ଦେଲେ । ତାର ତ ଶୀତଳ ସ୍ୱଭାବ ଥିଲା । ସେ ଶୀତଳ କିରଣରେ ପୃଥିବୀକୁ ଆଲୋକ ଦେଲା । ଆଉ ତାର ସ୍ୱାମୀ ରାଗରେ ଲାଲ ହୋଇଥିଲେ । ତାଙ୍କୁ



ଈଶ୍ୱର ସୂର୍ଯ୍ୟ କରିଦେଲେ । ତାଙ୍କର ସ୍ୱଭାବ ଖୁବ୍ ତେଜସ୍ୱୀନ୍ ଥିବାରୁ ସେ ପୃଥିବୀକୁ ସବୁବେଳେ ଗରମ ଆଲୁଅ ଦେଲେ ।

ସେହିଦିନୁ ସୂର୍ଯ୍ୟ ଚନ୍ଦ୍ରଙ୍କୁ ଧରିବାକୁ ବୁଲୁଛନ୍ତି । ଚନ୍ଦ୍ର କିଣ କରୁଛନ୍ତି ନା ସୂର୍ଯ୍ୟ ଅସ୍ତ ଗଲାପରେ ନିଜର ମୁହଁ ଦେଖାଉଛନ୍ତି ।



ଏମିତି ବୁଲୁଛନ୍ତି । ଯେଉଁ ଦିନ ସୂର୍ଯ୍ୟ ଚନ୍ଦ୍ରଙ୍କୁ ଧରି ପକାଇବେ ସେଦିନ ଏ ସାରା ସଂସାର ଲୋପ ପାଇଯିବ ।



## ସମୁଦ୍ର ପାଣି ଲୁଣିଆ ହେଲା କାହିଁକି ?

[ ଗୁଜୁରାଟୀ ଲୋକକଥା ]

ଦଶହରା ପରେ ଆସିଲା ଦୀପାବଳି ପର୍ବ । ଦୀପାବଳିରେ ଗାଁ ଗହଳର ଧନୀ ଓ ଗରିବ ସମସ୍ତେ ଦୀପ ଜାଳିବାକୁ ପୁଣି ବଡ଼ ବଡ଼ୁଆ ଡାକିବାକୁ ସଜ ହେଲେ । ସହରର ଧନୀ ଶେଠମାନଙ୍କ କଥା ଛାଡ଼ – ସେମାନେ ତ କେତେ ରକମର ଆଲୁଅରେ ସହରକୁ

ସାଲୋଲ କରିଦେବେ, ଉଆଁସର କଳା କଟି କଟି ଅନ୍ଧାରକୁ ସତେ ଯେମିତ ଘଉଡ଼ େଦେବେ, ଭୋଜ କରିବେ । ସେମାନେ ମଧ୍ୟ ଏଥିପାଇଁ ସଜ ହେଲେ ।

ଭଗତରାମର ଘର ସହରଠୁଁ ବହୁତ ଦୂରରେ ମଫସଲ ଗାଁ ଗହଳରେ । ନିଜର ବିଲ ବାଡ଼ ନାହିଁ କି ଚାଷ ନାହିଁ—ଅଛି ଖାଲି ଭଙ୍ଗା ଦଦରା ବାସ ଖଣ୍ଡିଏ । ପିଲା ଚାରିଟି ତାର ଅଧେ ଦିନ ଉପାସ ରହନ୍ତି । ଚିରା ଫଟା ପିନ୍ଧନ୍ତି ।

ଭଗତରାମର ବଡ଼ ଭାଇ ଜଗତରାମ ମସ୍ତବଡ଼ ଲୁଗା ବ୍ୟବସାୟୀ । ସହରରେ ତାର ବଡ଼ ବଡ଼ କୋଠା, ଲକ୍ଷ ଲକ୍ଷ ଟଙ୍କାର କାରବାର, ଅଚଳାଚଳ ସମ୍ପତ୍ତି । ପୁଅ ଝିଅ ମୋଟେ ଦୁଇଟି [illegible]ଙ୍କ ଢଙ୍ଗ ଦେଖିବ କିଏ ?

[illegible]ବଳିରେ ଧନୀ ଗରିବ ସମସ୍ତଙ୍କ ପିଲାଙ୍କର ତ ଫୁଲଝରି, ଫୋଟକା ମାରିବାକୁ ମନ ହୁଏ । ଧନ ଅନୁପାତରେ କିଏ କମି ମାରେ, କିଏ ବେଶୀ ମାରେ ସିନା ମନ ତ ସମସ୍ତଙ୍କର ସମାନ ।

ଭଗତରାମର ପିଲାମାନେ ବାପର ଅବସ୍ଥା କଅଣ ବୁଝିଛନ୍ତି ? ଫୋଟକା ପାଇଁ ଅଳି କଲେ । ତାର ସ୍ତ୍ରୀ ଭଗତରାମକୁ କହିଲା । "ଏ ପିଲାମାନେ ତ କିଛି ବୁଝୁ ନାହାନ୍ତି, ବାଣ ପାଇଁ କାନ୍ଦୁଛନ୍ତି । ତୁମେ ଯାଆ କି— ବଡ଼ ଭାଇଙ୍କୁ କିଛି ସାହାଯ୍ୟ ମାଗିବ । ସେ କିଛି ଦେଲେ ଆମେ ଦିପାବଳି ପର୍ବ ପାଳିବା ।"

ଭଗତରାମ ଦଶ ମାଇଲ ବାଟ ଚାଲି ଚାଲି ସହରରେ ବଡ଼ ଭାଇଙ୍କୁ ଦେଖାକଲା । ସାନ ଭାଇର ଚିରା ଫଟା ଲୁଗା, ଗରିବ ବେଶ ଦେଖି ବଡ଼ ଭାଇଙ୍କ ମନରେ ଟିକିଏ କଷ୍ଟ ହେଲାନି—ଦୟା ବ

ହେଲା ନାହିଁ । ଗୁରୁକର ବାକର ଦେଖିଲେ କାଳେ ଶେଠଙ୍କ ଘର ବୋଲ ଶୁଣିବେ ଆଉ ହସିବେ, ଏଥିପାଇଁ ସେ ସାନ ଭାଇକୁ ଘର ଭିତରକୁ ଡାକିଲେ ନାହିଁ ।

ଭଗତରାମ ଭଉଣୀଙ୍କ ଘର ବାହାରେ ଠିଆ ହୋଇ ଥାଏ । ବଡ଼ଭାଇ ଝଟ୍ କରି ଘର ଭିତରକୁ ଯାଇ ଗୁରୁକର ହାତରେ ଭେଲି ଗୁଡ଼ ଚକଟିଏ ପଠାଇ ଦେଲେ ।

ଭଗତରାମ ଭେଲିଗୁଡ଼ ଧରି ଘରକୁ ଫେରୁଛି, ବାଟରେ ଜଣେ ଫକୀରଙ୍କ ସଙ୍ଗେ ଦେଖା ହେଲା ।

ଫକୀର କହିଲେ—"ଭୋକରେ ଜଳୁଛି ପେଟ,

ଚାଲି ପାରୁ ନାହିଁ ବାଟ,

ଭାଇ, ତୁମ ହୃଦେ ଦୟା ହେବ କି ?

ମନରେ ନ ଭାବ କିଛି

ତୁମଠାରେ ଯାହା ଅଛି

ଖାଇବାକୁ ମତେ କିଛି ଦେବ କି ?

ଭଗତରାମ ଗରିବ ହେଲେ କ'ଣ ହେଲା, ତାର ହୃଦୟ ଥିଲା । ସେ ନିଜେ ଦୁଃଖୀ ବୋଲି ଅନ୍ୟର ଦୁଃଖ ବୁଝିଲା । ନିଜର ଛୁଆ ପିଲାଙ୍କ କଥା ଭୁଲିଗଲା । ଆଣିଥିବା ଗୁଡ଼ରୁ କିଛି ଫକୀରଙ୍କୁ ଖାଇବାକୁ ଦେଲା । ଫକୀର ଗୁଡ଼ ଖାଇ ପାଣି ପିଇଲେ । ବଡ଼ ସନ୍ତୋଷରେ କହିଲେ, "ଦେଖ ଭାଇ, ଏଇ ଯେଉଁ ପାହାଡ଼ ଦିଶୁଛି, ସେଥିରେ ଗୋଟିଏ ଗୁମ୍ଫା ଅଛି । କେତୋଟି ବାମନ ସେଠି ଅଛନ୍ତି । ସେମାନଙ୍କ ପାଖରେ ଗୋଟିଏ କୁହୁକ ବାକ୍ସ ଅଛି । ବାକ୍ସଟିକୁ ଯାହା ମାଗିବ ସେଥିରୁ ତାହା ମିଳିବ । ଯେଉଁ କାମ କରିବାକୁ କହିବ ସେ ତାହା କରିଦେବ ।"

ବାମନମାନଙ୍କର ଗୁଡ଼ ଖାଇବାରେ ଭାରି ମନ । ତୁମେ ସେମାନଙ୍କୁ ଗୁଡ଼ ଦେଇ ତାଙ୍କଠାରୁ ସେ କୁହୁକ ବାକ୍ସଟି ଆଣିବ । ବାକ୍ସ ଧରି ମୋ ପାଖରେ ପହଞ୍ଚିଲେ ତଣିକ ଯାହା କରିବାକୁ ହବ, ମୁଁ ବତାଇ ଦେବି ।”

ଫକୀର ଭଗତରାମକୁ ଏସବୁ କହିଲା ବେଳକୁ ବେଳବୁଡ଼ି ହେଲାଣି । ସୂର୍ଯ୍ୟ ଦେବତା ନାଲିଫଟୁ ବୁଣି ବୁଣି ପାହାଡ଼ ସେ ପଟକୁ ଯିବାକୁ ବାହାରିଲେଣି । ଚଢ଼େଇସବୁ ବସାକୁ ବାହୁଡ଼ିଲେଣି । ଫକୀରଙ୍କ କଥା ମାନି ଭଗତରାମ ଗୁଡ଼ ଧରି ପାହାଡ ପାଖକୁ ଗଲା । ସେଠି ପହଞ୍ଚିଲା ବେଳକୁ ମାତ୍ର ଅନ୍ଧାର ବେଳ ।

ଭଗତରାମ ବାମନମାନଙ୍କୁ ଗୁଡ଼ ଦେଖାଇଲା । ଗୁଡ଼ ଦେଖି ମନ ଖୁସିରେ ସେମାନେ ଦମେ ନାଚି ଗଲେ । ଗୁଡ଼ ଖାଇବାକୁ ଠିକ ଠକ ହେଲେ । ଭଗତରାମ କହିଲା, “ଗୁମ୍ଫା ଭିତରେ ତୁମର ଯେଉଁ ବାକ୍ସଟି ଅଛି, ମତେ ବଦଳ ଦେବ ଯଦି ମୁଁ ଏ ଗୁଡ଼ତକ ତୁମକୁ ଦେଇଦେବି ।” ବାମନଯାକ ଝଟ୍ କରି ବାକ୍ସଟିକୁ ଭଗତ-ରାମ ଆଗରେ ଥୋଇ ଦେଇ ଗୁଡ଼କୁ ଚକେଇ ରହିଲେ । ଭଗତରାମ ଗୁଡ଼ତକ ଦେଇ ବାକ୍ସଟି ଧରି ଫକୀରଙ୍କ ପାଖକୁ ଫେରିଲା ବେଳକୁ ଉଆଁସ ରାତିର ଘଡ଼ିଏ ହେଲାଣି । ଫକୀର କୁହୁକ ବାକ୍ସଟି ଦେଖି ଭାରି ଖୁସି ହେଲେ । କହିଲେ, “ଯାହା ଜିନିଷ ଦରକାର ହେବ କିମ୍ବା ଯୋଉ କାମ କରିବାକୁ ମନ ହେବ, ଏଇ ବାକ୍ସକୁ କହିଲେ ସେ ସବୁ କରିଦେବ । ତୁମର କାମ ସରିଲେ ଏହି ମନ୍ତ୍ରଟିକୁ ଥରେ କରି କହିଦେଲେ ବାକ୍ସ ସବୁ ବନ୍ଦ କରିଦେବ ।” ଭଗତରାମର କାନରେ ମନ୍ତ୍ରଟି କହିଦେଇ ଫକୀର ଚାଲିଗଲେ । ଭଗତରାମ କୁହୁକ ବାକ୍ସଟି ଧରି ଘରେ ପହଞ୍ଚିଲା ବେଳକୁ ରାତି ପହରେ ।

ଆଜ ଘିପାବଳିରେ ସମସ୍ତେ ଘିପ ଜାଳୁଛନ୍ତି, ବାଣ ମାରୁଛନ୍ତି । ସମସ୍ତଙ୍କ ଘରେ ହସ ଖୁସି ଆନନ୍ଦର ଜୁଆର । ମାତ୍ର ଭଗତରାମର ଘର ଅନ୍ଧାର—

ବାପା ଯାଇଛନ୍ତି । ବାଣ ଆଣିବେ । ଗରମ ଜିଲପି ଆଣିବେ । ଘିପାବଳିରେ ଜିଲପି ଖାଇ ବାଣ ମାରିବାକୁ ଗୁହିଁ ଗୁହିଁ ହତାଶ ମନରେ ପିଲାମାନେ ଭେଁ ଭେଁ କାନ୍ଦୁଥାନ୍ତି ।

ଭଗତରାମ ଘରେ ପହଞ୍ଚି ଆଗ ଗୋଟିଏ ଚଦର ବିଛେଇବାକୁ ତା ସ୍ତ୍ରୀକୁ କହିଲା । ସ୍ତ୍ରୀ ଚଦର ପାରି ଦେଲା । ଚଦର ଉପରେ ବାକ୍ସଟି ଥୋଇ ଭଗତରାମ କହିଲା, "ପିଲାଙ୍କପାଇଁ ଗରମ ଜିଲପି ଆଉ ବଢ଼ିଆ ବାଣ ଦରକାର ।"

ସଙ୍ଗେ ସଙ୍ଗେ ଗରମ ଜିଲପି, ଫୁଲଝରି, ଫୋଟକା ହେଇକା କେତେ କଅଣ ବାଣ ଚଦର ଉପରେ ଗଦା ହୋଇଗଲା । ପିଲାମାନେ ଜିଲପି ଖାଇ ବାଣ ମାରିବାକୁ ଖୁସିରେ ବାହାରକୁ ଗଲେ । ଭଗତରାମ ମନ୍ତ୍ରଟି ପଢ଼ି ବାକ୍ସର କାମ ବନ୍ଦ କରିଦେଲା ।

ଭଗତରାମ ସ୍ତ୍ରୀକୁ ପାଖରେ ବସାଇ ସବୁକଥା କହିଲା । ବାକ୍ସରୁ ସେ ଦୁହେଁ ମନ ଅନୁସାରେ ଜିନିଷ ପାଇ ଘିପାବଳି ବଢ଼ିଆ କରି ପାଳିଲେ । ଲକ୍ଷ୍ମୀ ପୂଜା କଲେ । ଆରଦିନ ସେହି ବାକ୍ସକୁ ବରାଦ କଲାରୁ ସେ ନୂଆ ଘର ତୋଳିଦେଲା । ଧନ ଦରବରେ ଘର ଭରିଗଲା ।

ଦିନେ ଭଗତରାମ ଗାଁଆବାଲାଙ୍କୁ ଡାକି ଗୋଟିଏ ଭୋଜି ଦେଲା । ସେ ଭୋଜିକୁ ତା ବଡ଼ ଭାଇ ଜଗତରାମଙ୍କୁ ବି ନିମନ୍ତ୍ରଣ କଲା ।

ସମସ୍ତେ ଭୋଜଂଖାଇ ଖୁସି ହେଲେ । ଖୁସି ହେଲେ ନାହିଁ ଏକା ବଡ଼ ଭାଇ ଜଗତରାମ । ସେ ଖାଇଲାବେଳେ ଭାବୁଥାନ୍ତି – 'ଏସବୁ ଆସିଲା କୋଉଠୁ ? ଭଗତରାମ ତ କାଲି ମୋ ଦୁଆରେ ହାତ ପାତି ଠିଆ ହୋଇଥିଲା । ମୁଁ ଭେଲି ଗୁଡ଼ ଚକଟିଏ ଦେଲି । ଆଜି ଏ କଣ !!'

ମନର ଉଦ୍‌ବେଗକୁ ରୋକି ନ ପାରି ଜଗତରାମ ସାନ ଭାଇକୁ ପଚାରିଲେ । ସାନ ଭାଇ ତ ଖୋଲା ଲୋକ – ସବୁକଥା କହି ବଡ଼ ଭାଇକୁ ବାକ୍‌ସଟି ଦେଖାଇ ଦେଲା ।

ତେଣିକି ଜଗତରାମଙ୍କର ଲାଗିଲା ଜଗର ଏ ବାକ୍‌ସ କମିତି ନେବେ । ଭଗତରାମକୁ ପାଞ୍ଚ ହଜାର ଦେବି, ଦଶ ହଜାର ଦେବି— ଏମିତି କେତେ କଥା କହି ସେ ବାକ୍‌ସଟି ମାଗିଲେ । ଭଗତରାମ ବାକ୍‌ସ ବଳରେ ତାର ଘରଦ୍ୱାର ଧନଦରବ ସବୁ କରି ସାରିଥିଲା । ସଂସାରରେ ତାର ଅଭାବ କିଛି ନ ଥିଲା । ମନର ଲୋଭ ସିନା ଅଭାବ ତିଆରି କରେ – ଲୋଭୀକୁ ସବୁ ସମ୍ପଦ ନଅଣ୍ଟିଆ ଲାଗେ । ଭଗତରାମର ମନରେ ଲୋଭ ନ ଥିଲା । ସେ ବଡ଼ ଭାଇଙ୍କୁ ବାକ୍‌ସଟି ଦେଇ ଦେଲା ।

ଜଗତରାମ ତ ବଡ଼ ଶେଠ । ବାକ୍‌ସ ବଳରେ ଆହୁରି ବଡ଼ ହେବାକୁ ଭାବି ବେପାର କରିବା ପାଇଁ ଜାହାଜରେ ଚାଲିଲେ ଦୂର ଦେଶକୁ । ସଙ୍ଗରେ ଧରିଥାନ୍ତି ସେଇ ବାକ୍‌ସଟିକୁ । ଜାହାଜ ସମୁଦ୍ରର ନୀଳପାଣି କାଟି ବହୁତ ଦୂର ଗଲା ପରେ ଶେଠ ଜଗତରାମ ଭୋଜନରେ ବସିଲେ । ତରକାରୀରେ ଲୁଣ ପଡ଼ି ନ ଥିଲା । ଅଲଣା ତରକାରୀରେ ଲୁଣ ମିଶାଇବା ଲାଗି ସେ ବାକ୍‌ସକୁ କହିଲେ, "ଲୁଣ ଚୂରିଦେଲୁ ବାକ୍‌ସ ।" ବାକ୍‌ସରୁ ସଙ୍ଗେ ସଙ୍ଗେ ଚୂରିଲୁଣ

ବାହାରିଲା । ଅଳ୍ପ ଚମୁଟେ ଲୁଣରେ ସେଠଙ୍କର ଭୋଜନ ସରିଲା । ଏଣେ କଳରୁ ବାକ୍ସରୁ ଲୁଣ ବାହାରୁଥାଏ । ଆଉ ବନ୍ଦ ହେଉ ନ ଥାଏ । ସେଠ ଚମୁଟେ ଲୁଣ ଥାନରେ ଶଗଡ଼େ ଚୂର୍ଣ୍ଣଲୁଣ ଦେଖି ବାକ୍ସ ବନ୍ଦ କରିବାକୁ କେତେ ଯତ୍ନ କଲେ, ବାକ୍ସ ବନ୍ଦ ହେଲା ନାହିଁ । ବନ୍ଦ ହେବାର ଅସଲ ମନ୍ତ୍ରଟି ତ ରହିଲା ଭଗତରାମଠିଁ କାହିଁ କେତେ ଦୂରରେ । ବାକ୍ସ ଦେଲାବେଳେ ଭଗତରାମ ବନ୍ଦ



କରିବା ମନ୍ତ୍ରଟି ଭାଇଙ୍କୁ କହିବାକୁ ଭୁଲିଯାଇଛି । ଭାଇ ମଧ ବାକ୍ସ ପାଇ ଆନନ୍ଦରେ ଭୋଳ । ଏବେ ଉପାୟ କଣ ? ଜାହାଜ ଲେଉଟାଇ କୂଳକୁ ଆସିଲେ ସିନା ଭଗତରାମକୁ ପଚାରିବେ, ବତାରିବେ; ନ ହେଲେ ତା ବାକ୍ସକୁ ତାକୁ ଫେରାଇବେ ।

ମାତ୍ର କୂଳକୁ ଯିବାକୁ ତର କାହିଁ ? ଚାହୁଁ ଚାହୁଁ ଲୁଣରେ ଜାହାଜ ଭରିଗଲା । ଯୁଆଡ଼େ ଚାହିଁବ ଖାଲି ଲୁଣ । ଲୁଣ ଭାରରେ ଜାହାଜ ସମୁଦ୍ରରେ ବୁଡ଼ିଗଲା । ସେଥି ସଙ୍ଗରେ ସେଠ ଜଗତରାମ,

ତାଙ୍କର ଲୋକବାକ, ଧନଦରବ ସବୁ ଗଲା ସମୁଦ୍ରର ଅତଳ ଗର୍ଭକୁ । ସେମାନଙ୍କ ସଙ୍ଗରେ ବାକ୍ସଟି ଯାଇଛି ତ—ବାକ୍ସରୁ ଲୁଣ ବାହାରୁଛି—ବନ୍ଦ ହୋଇ ନାହିଁ । ସମୁଦ୍ରପାଣର ପାଣି ଲୁଣ କଟ କଟ ହେଲାଣି ।



## ଗ୍ରହଣ ହୁଏ କାହିଁକି ?

[ ସିଂହଳୀ ଲୋକକଥା ]

ଆମ ଦେଶରେ ପ୍ରତି ବର୍ଷ ପ୍ରାୟ ଥରେ ଦୁଇ ଥର ସୂର୍ଯ୍ୟ ଗ୍ରହଣ କିମ୍ବା ଚନ୍ଦ୍ର ଗ୍ରହଣ ହୁଏ । ସେ ଦିନ ସ୍କୁଲ କଚେରି ବନ୍ଦ ହୁଏ । ଲୋକମାନେ ହାଣ୍ଡିଗୁଡ଼ି କରି ଖାଇବା ବନ୍ଦ କରନ୍ତି । ଦେଉଳରେ ଠାକୁରଙ୍କର ପୂଜା ପର୍ଯ୍ୟନ୍ତ ବନ୍ଦ ରହେ । ଗ୍ରହଣ ଲାଗିବା ବେଳେ ଧର୍ମ ଲୋକମାନେ କେତେ ଦାନ ପୁଣ୍ୟ କରନ୍ତି । କିଛି ସମୟ ପରେ ଗ୍ରହଣ ଛାଡ଼ିଯାଏ । ଏହି ଗ୍ରହଣ ସମୟରେ ଚନ୍ଦ୍ର କିମ୍ବା ସୂର୍ଯ୍ୟ ପୂରା ଗୋଲ ନ ଦିଶି ଟିକିଏ ଖଣ୍ଡିଆ ଦିଶନ୍ତି । ଥରେ ଥରେ ବହୁତ ଖଣ୍ଡିଆ ଦିଶନ୍ତି । ଏପରିକି କିଛି ସମୟ ପାଇଁ ଏକାବେଳକେ ଲୁଚି ଯାଆନ୍ତି । ଅନ୍ଧାର ଘୋଟିଯାଏ ।

ଗ୍ରହଣ ବିଷୟରେ କେତେ ଲୋକ କେତେ ପ୍ରକାର କଥା କହନ୍ତି । ଆମ ଦେଶର ପୁରାଣ ପଣ୍ଡିତ ଓ ଜ୍ୟୋତିଷୀମାନେ କହନ୍ତି—

"ଥରେ ଦେବତା ଓ ଅସୁରମାନେ ମିଶି ସମୁଦ୍ର ମନ୍ଥନ କଲେ । କ୍ଷୀର ସମୁଦ୍ର ଭିତରେ ମେରୁ ପର୍ବତ ହେଲା ଖୁଆ, ବାସୁକି

ନାଗକୁ କଲେ ଦଉଡ଼ି । ସେହି ଦଉଡ଼ିର ଗୋଟିଏ ପାଖ ଧରିଲେ ଦେବତାମାନେ, ଆଉ ଗୋଟିଏ ପାଖ ଧରିଲେ ଅସୁରମାନେ । ଦହି ଦୁଧକୁ ଖୁଆ ପକେଇ ମୁହିଁଲା ଭଳି ସେମାନେ ମୁହିଁଲେ । ଦହି ଦୁଧକୁ ମୁହିଁଲେ ତ ସେଥିରୁ ଲହୁଣୀ ବା ମଖନ ବାହାରେ । ସେମିତି ସମୁଦ୍ର ମନ୍ଥନରୁ କେତୋଟି ଅପୂର୍ବ ପଦାର୍ଥ ବାହାରିଲା — ଲକ୍ଷ୍ମୀ, ଐରାବତ ହସ୍ତୀ, ଉଚ୍ଚୈଃଶ୍ରବା ଅଶ୍ୱ, ଅମୃତ ଇତ୍ୟାଦି । ଦେବତାମାନେ ସେ ସବୁକୁ ଆପଣା ଭିତରେ ବାଣ୍ଟି-ନେଲେ । ଅମୃତକୁ ଖାଇଲେ କେହି ମରନ୍ତି ନାହିଁ । ସେହି ଅମୃତ ବଣ୍ଟା ହେଲା ବେଳକୁ ଦେବତା ଓ ଅସୁରଙ୍କ ଭିତରେ ଲାଗିଲା କଳି ।

ଈଶ୍ୱର ମୋହିନୀ କନ୍ୟା ରୂପରେ ଆସି ସମସ୍ତଙ୍କୁ ବସାଇ ଅମୃତ ବାଣ୍ଟି ଦେଲେ । ଦେବତାମାନେ ଗୋଟିଏ ଧାଡ଼ିରେ ବସିଲେ । ଅସୁରମାନେ ଆଉ ଏକ ଧାଡ଼ିରେ ବସିଲେ । ମୋହିନୀ କନ୍ୟା କଣ କଲେ ନା — ଦେବତାମାନଙ୍କୁ ଅମୃତତକ ଦେଲେ, ଅସୁରମାନଙ୍କୁ ଅନ୍ୟ ସୁଆଦିଆ ଜିନିଷ ଦେଲେ । ଅସୁରମାନେ ଏ କଥା ଜାଣି ପାରିଲେ ନାହିଁ । ଗୋଟିଏ ଅସୁର କ'ଣ କରିଥିଲା ନା — ଛଞ୍ଜରେ ଆସି ଦେବତାଙ୍କ ଧାଡ଼ିରେ ବସି ପଡ଼ିଥିଲା । ସେ ସେମାନଙ୍କ ସଙ୍ଗରେ ଅମୃତ ପାଇ ଖାଇଦେଲା । ଅମର ହୋଇଗଲା । ଏକଥା ପଛରେ ଜଣାଗଲାରୁ ସେ ଧରା ପଡ଼ିଲା । କ'ଣ କରାଯିବ ? ସେତ ଅମୃତ ଖାଇ ଅମର ହୋଇଛି, ମରିବ ନାହିଁ । ଚିରଦିନ ବଞ୍ଚି ରହିଲେ ବଡ଼ ଉତ୍ପାତ କରିବ । ଦେବତାମାନେ ତାକୁ ଦଗଡ଼ି କରି କାଟିଦେଲେ । ମୁଣ୍ଡ ଗଣ୍ଡି ଅଲଗା ହୋଇଗଲା । ତେବେ ବି ସେ ମଲାନାହିଁ । ସେହିଦିନୁ ସେ ଅସୁର ରାଗରେ ରାହୁ ଓ କେତୁ ହୋଇ ସୂର୍ଯ୍ୟ ଓ ଚନ୍ଦ୍ରଙ୍କୁ ଗିଳିବାକୁ ଚେଷ୍ଟା କରୁଛି । ରାହୁ କିମ୍ବା କେତୁର ସୂର୍ଯ୍ୟ ଚନ୍ଦ୍ରଙ୍କୁ ଗ୍ରାସିବା ସମୟକୁ ଗ୍ରହଣ କହନ୍ତି ।

ବିଜ୍ଞାନୀ ପଣ୍ଡିତମାନେ କହନ୍ତି, ସୂର୍ଯ୍ୟ ସ୍ଥିର ଅଛନ୍ତି । ପୃଥିବୀ ସୂର୍ଯ୍ୟ ଚାରିକଡ଼ରେ ବୁଲୁଛି । ଚନ୍ଦ୍ର ପୃଥିବୀ ଚାରିକଡ଼ରେ ବୁଲୁଛି । ଏହିପରି ବୁଲୁ ବୁଲୁ ଚନ୍ଦ୍ର ଓ ସୂର୍ଯ୍ୟଙ୍କ ଦେହରେ ଛୁଇଁ ପଡ଼ିଲେ ଗ୍ରହଣ ଲାଗେ ।

ଏହି ଗ୍ରହଣ ବିଷୟରେ ଗୋଟିଏ ଭଲ ଲୋକକଥା ମଧ୍ୟ ଅଛି । ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଏହି ତିନିପୁର ଭିତରେ ସ୍ୱର୍ଗରେ ସବୁବେଳେ ଆଲୁଅ । ସବୁବେଳେ ଆନନ୍ଦ । ସବୁବେଳେ ସୁଖ । ଅନ୍ଧାର କି ଅଭାବ କି ଦୁଃଖ ସ୍ୱର୍ଗରେ ନ ଥାଏ । ସେଥିପାଇଁ ସମସ୍ତେ ସ୍ୱର୍ଗକୁ ଯିବାକୁ ଇଚ୍ଛା କରନ୍ତି । ବଞ୍ଚିଥିବା ଭିତରେ ତ ଯାଇହୁଏ ନି, ସେଥିପାଇଁ ମଲା ପରେ ହେଲେ ସ୍ୱର୍ଗକୁ ଯିବା ଲାଗି ଲୋକେ ଦାନ ପୁଣ୍ୟ କରନ୍ତି, ଯାଗଯଜ୍ଞ କରନ୍ତି । ପୂଜା ପାଠ, ଜପ ଯୋଗ ଆଦି କେତେ କଣ କରନ୍ତି । ଆମର ଏ ମର୍ତ୍ତ୍ୟରେ ଆଲୁଅ ଅନ୍ଧାର ଦୁଇ କଥା ଅଛି । ଦିନ ଅଛି, ରାତି ଅଛି । ସୁଖ ଅଛି, ଦୁଃଖ ବି ଅଛି । ମାତ୍ର ପାତାଳରେ ଖାଲି ଅନ୍ଧାର । ଦିନରାତି, ମାସ ବର୍ଷ ସବୁବେଳେ ଅନ୍ଧାର । ଖାଲି ଅନ୍ଧାର ନୁହେଁ, ଖୁବ୍ କଟିକଟିଆ ଅନ୍ଧାର । ମୁହଁକୁ ମୁହଁ ଦିଶେ ନାହିଁ, ସେଥିଲାଗି ତାକୁ କହନ୍ତି ଅନ୍ଧାର ମୁଲକ ।

ଆମର ଏ ମର୍ତ୍ତ୍ୟରେ ଯେମିତି ରାଜ୍ୟ ଅଛି, ରାଜା ଅଛନ୍ତି, ପ୍ରଜା ପାଠକ ଅଛନ୍ତି, ସେ ଅନ୍ଧାର ମୁଲକ ପାତାଳରେ ବି ଯେମିତି ରାଜ୍ୟ ଅଛି, ରାଜା ଅଛନ୍ତି, ପ୍ରଜା ପାଠକ ବି ଅଛନ୍ତି । ସମସ୍ତେ ଅନ୍ଧାର ଭିତରେ ଥାଆନ୍ତି । ସେହି ପାତାଳ ପୁରର ଲୋକେ ଖୁବ୍ ବଡ଼ ବଡ଼ କୁକୁର ପାଳନ୍ତି, କାହିଁକି ନା ଅନ୍ଧାରରେ ସେମାନେ କୁକୁରଠାରୁ ବହୁତ ସାହାଯ୍ୟ ପାଆନ୍ତି ।

ରାଜ୍ୟର ଉନ୍ନତି ଲାଗି, ପ୍ରଜାମାନଙ୍କର ହିତ ଲାଗି, ରାଜାଙ୍କର ଚିନ୍ତା କରିବାର କଥା । ସେଥିପାଇଁ ପାତାଳ ପୁରର ରାଜାମାନେ କେମିତି ତାଙ୍କ ରାଜ୍ୟ ଆଲୁଅ ପାଇବ ଏହି ଚିନ୍ତା ସବୁବେଳେ କରୁଥିଲେ । ସବୁ ଉନ୍ନତି, ସବୁ ସୁଖର ମୂଳ ଆଲୁଅ । ଆଗ ଆଲୁଅ ହେଲେ ତା ପଛକୁ ଆଉ ଯାହା ହେବାର କଥା । ଆଲୁଅ ନ ହେଲେ କିଛି ହୋଇ ପାରିବ ନାହିଁ ।

ଏହି ଆଲୁଅ ଚିନ୍ତାରେ ପାତାଳ ପୁରର ଜଣେ ରାଜା ଥରେ ତାଙ୍କର ସବୁଠୁ ବଳୁଆ କୁକୁରକୁ କହିଲେ-"ତୁ ସ୍ୱର୍ଗକୁ ଯା-ସେଠୁ ସୂର୍ଯ୍ୟଙ୍କୁ ଝିଙ୍କିଆଣି ଆଣିବୁ । ସୂର୍ଯ୍ୟ ଆସିଗଲେ ତା ପଛରେ ମେଘ, ପବନ ଆଦି ସବୁ ଆସିଯିବ ।"

କୁକୁର ରାଜାଙ୍କ ଆଜ୍ଞା ମାନି ସ୍ୱର୍ଗକୁ ଗଲା । ସେଠି ପହଞ୍ଚି ଆଗ କରି ସୂର୍ଯ୍ୟଙ୍କ ଦେହରେ ମୁହଁ ଲଗେଇ ଦେଲା । ଗୁହଁ କରି ତା ମୁହଁ ତାତିଗଲା । ଚଡ଼ ଚଡ଼ କରି ଫୋଟକା ବାହାରି ପଡ଼ିଲା । ସେ ସୂର୍ଯ୍ୟଙ୍କୁ ଛାଡ଼ିଦେଇ ଫେରି ପଡ଼ିଲା । ବଡ଼ ଲହ ଲହକା ଜିଭ କାଢ଼ି ଧଇଁଲେଇ ହେଲା । କିଛି ସମୟ ଏମିତି ହୋଇ ପୁଣି ମନରେ ସାହସ ବାନ୍ଧି ସୂର୍ଯ୍ୟଙ୍କ ଆଡ଼କୁ ମୁହାଁଇଲା । ଏଥର ମଧ୍ୟ ସେଇ ଦଶା । କୁକୁର ବହୁତ ଚେଷ୍ଟା କଲା ବେଳକୁ ତାର ଯନ୍ତ୍ରଣା ଏପରି ହେଲା ଯେ ସେ ସୂର୍ଯ୍ୟଙ୍କୁ ଆଣିବା ଆଶା ଛାଡ଼ି ପାତାଳ ପୁରକୁ ଫେରି ଆସିଲା । ରାଜା କୁକୁରକୁ ଖାଲି ଲେଉଟିବା ଦେଖି ଖୁବ୍ ରାଗିଲେ । କୁକୁର କହିଲା, "ମହାରାଜ, ମୁଁ ଯେ ସେଠୁ ଏ ଦେହ ଧରି ଫେରିଛି ଏଇ ମୋର ଭାଗ୍ୟ । ସୂର୍ଯ୍ୟଙ୍କ ପାଖକୁ ଗଲେ ସେଠି ପୋଡ଼ି ପାଉଁଶ ହେବାର କଥା ।"

ରାଜା କଣ କଲେ ନା ଆଉ ଏକ କୁକୁରକୁ ପଠାଇଲେ ଚନ୍ଦ୍ରକୁ ଆଣିବାକୁ । ରାଜା ଭାବିଲେ ଯେ ସୂର୍ଯ୍ୟ ଗିଳା କଠିନ ବୋଲି



ଆଣିହେଲା ନାହିଁ । ଚନ୍ଦ୍ର ତ ଶୀତଳ । ଚନ୍ଦ୍ରକୁ ଆଣିବାରେ କିଛି ଅସୁବିଧା ହେବ ନାହିଁ ।

ଏ କୁକୁରଟି ଏଥର ସ୍ୱର୍ଗକୁ ଗଲା । ସେ ମଧ୍ୟ ମନେ ମନେ ଭାବଥିଲା – ଖୁବ୍ ସହଜରେ 'ଚନ୍ଦ୍ରଙ୍କୁ ଆଣି ରାଜାଙ୍କ ପାଖରେ ପହଞ୍ଚାଇ ଦେଲେ ରାଜା ଖୁସି ହେବେ । ସେ କେତେ ପ୍ରଶଂସା ପାଇବ, ପୁରସ୍କାର ପାଇବ । ତାର ଭାଗ୍ୟ ବି ବଦଳି ଯିବ । ଏମିତି ସୁଖର ସ୍ୱପ୍ନ ଅନେକ ଦେଖି ଦେଖି ସେ ଚନ୍ଦ୍ରଙ୍କ ପାଖରେ ପହଞ୍ଚିଲା । ଚନ୍ଦ୍ରଙ୍କ ଦେହରେ ମୁହଁ ଲଗେଇ ଦେଇ ଆଉ ଯିବ କୁଆଡ଼େ ? ତା ପାଟି କୋଳ ମାରିଦେଲା । ମୁହଁଟା ବରଫ ପରି ହୋଇଗଲା । ସେ ଚନ୍ଦ୍ରଙ୍କୁ ଛାଡ଼ି ଦେଇ ଲାଙ୍ଗୁଳ ଯାକି ହଟି ଆସିଲା । କିଛି ସମୟ ପରେ ତା ଦେହ ଟିକଏ ଗରମ ହେଲାରୁ ପୁଣି ସାହସ ବାନ୍ଧି ଚନ୍ଦ୍ରଙ୍କ ପାଖକୁ ଗଲା । ଏଥର ମଧ୍ୟ ସେହି ଦଶା । ଶେଷରେ ନିରାଶ ହୋଇ ଖାଲି ହାତରେ ପାତାଳ ପୁରକୁ ଫେରିଲା । ରାଜା ମଧ୍ୟ ହତାଶ ହେଲେ ।

ସେହି ସମୟରୁ ଆଜିଯାଏ କେତେ କାଳ ଗଡ଼ିଗଲାଣି । ପାତାଳପୁର ସେମିତି ଅନ୍ଧାର ହୋଇ ରହିଛି । ଚନ୍ଦ୍ର ସୂର୍ଯ୍ୟ ଛଡ଼ା ଆଉ ସେଠି ଆଲୋକ ଦବ ବା କିଏ ? ସେ ଦେଶର ରାଜାମାନେ ଅନ୍ଧାରରେ ଛଟପଟ ହୋଇ ପଛ କଥାକୁ ପାଶୋରି ଦେଉଛନ୍ତି । ବେଳେବେଳେ କୁକୁର ପଠାଇ ସୂର୍ଯ୍ୟ ଚନ୍ଦ୍ରଙ୍କୁ ନେବାକୁ ଚେଷ୍ଟା କରୁଛନ୍ତି । ରାଜାଙ୍କ ଆଜ୍ଞା ପାଇ କୁକୁର ଆସି ସୂର୍ଯ୍ୟ ଚନ୍ଦ୍ରଙ୍କ ଦେହରେ ଯେଉଁ ଦିନ ମୁହଁ ଲଗାଉଛନ୍ତି, ସେଦିନ ଗ୍ରହଣ ହେଉଛି ବୋଲି ଲୋକେ କହୁଛନ୍ତି ।



# ଗଣେଶଙ୍କ ପୂଜା ଆଗ ହୁଏ କାହିଁକି ?

[ପୁରାଣ କଥା]

କ୍ଷୀର ସମୁଦ୍ରର କୂଳ । ଖରାଦିନର ଜହ୍ନରାତି । ଜହ୍ନ ଆଲୁଅରେ ଗୁରୁଆଡ଼ ହସି ଉଠୁଛି । ଜହ୍ନକୁ ଦେଖି ସମୁଦ୍ର ବେଳକୁ ବେଳ ଫୁଲି ଉଠୁଛି । ବଡ଼ ବଡ଼ ଲହରୀସବୁ ଉଠୁଛି । କୂଳରେ ପିଟି ହୋଇ ଫେରି ଯାଉଛି ପୁଣି ସେଇ ସମୁଦ୍ର କୋଳକୁ । ଗୁରୁଆଡ଼ ଶୂନ ଶାନ୍ । ଏଇ ନିରୋଳା ଜହ୍ନ ରାତିରେ କ୍ଷୀର ସମୁଦ୍ରର ସେଇ ନିରୋଳା ବାଲିପଡ଼ାରେ ଦେବତାମାନଙ୍କର ସଭା ହେବ । ରାତିଅଧ ବେଳକୁ ଦେବତାମାନେ ଗୋଟି ଗୋଟି ହୋଇ ନିଜ ନିଜ ବାହନରେ ଚଢ଼ି ପହଞ୍ଚିଗଲେ । ସମସ୍ତେ ଏକାଜୁଟ୍ ହେଲାପରେ ସଭା ଜମିଲା । ଦେବରାଜ ଇନ୍ଦ୍ର ହେଲେ ସଭାର ସଭାପତି ।

ସରସ୍ୱତୀ ଆଗ ଉଠି କହିଲେ, "ପାଠଶାଳାର ଶ୍ରେଷ୍ଠ ଶ୍ରେଷ୍ଠ ପିଲାମାନେ ଶ୍ରୀପଞ୍ଚମୀ ଦିନ ମୋର ପୂଜା କରନ୍ତି । ଏଥିପାଇଁ ମାସେ କି ପନ୍ଦର ଦିନଠୁଁ ସେମାନେ ମାତି ଥାନ୍ତି । ପୂଜା ଦିନ ରାତିରୁ ଉଠି କେତେଆଡ଼ୁ କେତେ ଫୁଲ ସଂଗ୍ରହ କରନ୍ତି, ମାଳ ଗୁନ୍ଥନ୍ତି, ମୋ ବେକରେ ମାଳ ଲମ୍ବାନ୍ତି । ଚୂନା ଫୁଲରେ ପୁଷ୍ପାଞ୍ଜଳି ଦିଅନ୍ତି । ବହୁତ ପ୍ରକାର ଭୋଗ ପୂଜା କରନ୍ତି । ସେମାନଙ୍କର ଆନନ୍ଦ ଓ ଭକ୍ତି ଯେ କେତେ, କଥାରେ କହି ହେବ ନାହିଁ । ମାତ୍ର ଏତେ ମନ ଧ୍ୟାନ

ଦେଇ ସରଳ ଶିଶୁମାନେ ପୂଜା କଲେ ବି ମୁଁ ଠିକଏ ହେଲେ ଖୁସି ହୋଇ ପାରିଲି ନାହିଁ । ପୂଜକ ବ୍ରାହ୍ମଣ କଅଣ କଲେ ନା ମତେ ଆଗ ପୂଜା ନ କରି ଗୋଟିଏ କଳସ ଥୋଇ ଗଣେଶଙ୍କୁ ଆଗ ପୂଜା କଲେ । ମୁଁ ମନ କଷ୍ଟରେ ସେଠୁ ଫେରି ଆସିଲି । ଗଣେଶ ଚଉଠି ଦିନ ତ ସେହି ପାଠଶାଳାରେ ଗଣେଶଙ୍କର ସ୍ୱତନ୍ତ୍ର ପୂଜା ହୁଏ, ମୋ ପୂଜାରେ ମଧ୍ୟ ସେଇ ଗଣେଶଙ୍କର ପୂଜା ସବା ଆଗ ହେଲା କାହିଁକି ?"

ସରସ୍ୱତୀଙ୍କ ପରେ ସୂର୍ଯ୍ୟ ଉଠି କହିଲେ—"ମହାଦେବୀ ସରସ୍ୱତୀ ଯାହା କହିଲେ ତାହା ଅକ୍ଷରେ ଅକ୍ଷରେ ସତ୍ୟ । ପୌଷମାସର ଶାମ୍ବଦଶମୀ ଦିନ ମୋର ପୂଜା ହୁଏ । କେତେ ପିଠା ପଣା କରି ଲୋକେ ଆନନ୍ଦରେ ମୋତେ ପୂଜନ୍ତି । ମୁଁ ଉଦୟ ହେବା ଆଗରୁ ମୋର ପୂଜା ଆରମ୍ଭ ହୋଇଯାଏ । ତାକୁ କହନ୍ତି ଅଣଉଦିଆ ପୂଜା । ଯେତେ ଯାହା କଲେ ବି ମୁଁ ଖୁସି ହୋଇ ପାରେ ନା । କାହିଁକି ନା—ସେ ପୂଜାରେ ବି ସେମିତି କଳସଟିଏ ବସେଇ ଆଗ ପୂଜା ହୁଏ ଗଣେଶଙ୍କର, ତା ପରେ ମୋର ।"

କାର୍ତ୍ତିକେୟ—କାର୍ତ୍ତିକ ପୂର୍ଣ୍ଣିମା ବେଳକୁ ମୋର ପୂଜା ହୁଏ । ଲୋକେ ମେଢ଼ କରି ବହୁତ ଆଡ଼ମ୍ବରରେ ମୋର ପୂଜା କରନ୍ତି । ହେଲେ କଣ ହେବ ? ମୋ ମେଢ଼ ପାଖରେ କଳସଟିଏ ରଖି ଆଗ ସେହି ଗଣେଶଙ୍କ ପୂଜା କରନ୍ତି । ମୁଁ ଆଶ୍ଚର୍ଯ୍ୟ ହୋଇ ଭାବେ—କଥା କଅଣ ? ଆଜିତ ମୋ ପୂଜା, ଗଣେଶ ପୂଜା ଆସିଲା କୁଆଡ଼ୁ ?

ଦୁର୍ଗା—ଦଶହରା ବେଳେ ମୋର ପୂଜା ପାଇଁ କେତେ ଯେ କଣ ହୁଏ ସେ କଥା କହିବା ଦରକାର ନାହିଁ । ଦେଶତମାମ୍

ଲୋକେ ମୋତେ ଜଗତ ଜନନୀ କହି ପୂଜା ଲାଗି ନାଚି ଉଠନ୍ତି । ସ୍କୁଲ, କଲେଜ, କଚେରୀ ସବୁ ମୋ ପୂଜା ପାଇଁ ଅନେକ ଦିନ ବନ୍ଦ ରହେ । କେତେ ଲୋକ ବଡ଼ ବଡ଼ ମେଢ଼ କରନ୍ତି । କେତେକ ନିଜ ଘରେ ପିତଳ ବା ସୁନାର ମୂର୍ତ୍ତି ରଖି ମୋର ପୂଜା କରନ୍ତି । ଯାହାର ଧନ ବଳ ନ ଥାଏ ସେ ଘରେ କଳସଟିଏ ରଖି ସେଥିରେ ମତେ ଆବାହନ କରେ । ଧୂପ, ଦୀପ, ନୈବେଦ୍ୟ, ଆରତି ସବୁ ହୁଏ । ଘଣ୍ଟ, ଘଣ୍ଟା, ତାଳ, ମୃଦଙ୍ଗ, ଶଙ୍ଖ, ଭେରୀ, ତୁରୀ ଆଦି ବାଇଦ ବାଜଣାରେ ଗୁରୁଆଡ଼ କମ୍ପି ଯାଏ । ଏତେ ହେଲେ କଅଣ ହେବ; କିନ୍ତୁ ମୋର ମେଢ଼ ପାଖରେ ସବା ଆଗ ଗଣେଶଙ୍କର ପୂଜା ହୁଏ । ଆପଣମାନେ ଜାଣନ୍ତି, ଏ ଦୁନିଆରେ ସମସ୍ତେ ମଧ୍ୟ ଜାଣନ୍ତି ଗଣେଶ ମୋ ପୁଅ । ତାହାର ପୂଜା ଆଗ ହେବାରେ ମୁଁ ମଧ୍ୟ ଆଶ୍ଚର୍ଯ୍ୟ ହୋଇଯାଏ ।

ଲକ୍ଷ୍ମୀ—ଧନ ପାଇବା ଆଶାରେ ମତେ ପୂଜା ନ କରେ ଏ ସଂସାରରେ କିଏ ? ଯେ କୋଟିପତି ହୋଇ ବସିଛି ସେ ଆହୁରି ଧନ ଆଶାରେ ମୋର ପୂଜା କରେ । ଯିଏ ଖାଇବାକୁ ନ ପାଇ ଦ୍ୱାର ଦ୍ୱାର ହାତ ପାତି ବୁଲୁଛି, ସେ ମଧ୍ୟ କିଛି ପାଇବା ଆଶାରେ ମୋର ପୂଜା କରେ । ମାର୍ଗଶିର ମାସ ଗୁରୁବାର ଦିନ ତ ଘରେ ଘରେ ମୋର ପୂଜା । ମୋ ପୂଜା ପାଇଁ ସମସ୍ତେ ଅତି ଭକ୍ତିରେ ମାତି ଉଠନ୍ତି । ମାତ୍ର କଳସଟିଏ ବସାଇ ସବା ଆଗ ଗଣେଶଙ୍କର ପୂଜା କରିସାରି ମୋର ପୂଜା କରନ୍ତି । ମୁଁ ମଧ୍ୟ ଏହାର ରହସ୍ୟ ବୁଝି ପାରେ ନାହିଁ ।

ଇମିତି ଚନ୍ଦ୍ର, ବରୁଣ, କୁବେର ଆଦି ଯେତେ ଦେବ ଦେବୀ ଉପସ୍ଥିତ ଥିଲେ ସମସ୍ତେ ନିଜ ନିଜର ଅନୁଭୂତି କଥା କହିଗଲେ ।

ସମସ୍ତଙ୍କ ଭୁଣ୍ଡନ୍ତ୍ ସେହି ଗୋଟିଏ କଥା — ସମସ୍ତଙ୍କର ସେହି ଗୋଟିଏ ଅଭିଯୋଗ ଯେ ସବୁଠି ଗଣେଶଙ୍କର ପୂଜା ଆଗ ହୁଏ କାହିଁକି ?

ସମସ୍ତଙ୍କର ବକ୍ତୃତା ଶୁଣି ସଭାପତି ଇନ୍ଦ୍ରଦେବ ଶେଷରେ ଉଠି କହିଲେ — ସମସ୍ତଙ୍କର ଅନୁଭୂତି ଯାହା ମୋର ମଧ୍ୟ ସେଇଆ । ଭାଦ୍ରବ ପୂର୍ଣ୍ଣମୀକୁ ଇନ୍ଦ୍ର ପୂର୍ଣ୍ଣମୀ ନାମ ଦେଇ ଲୋକେ ମୋର ପୂଜା କରନ୍ତି । ସେଦିନ ଏବଂ ଯାଗଯଜ୍ଞରେ ଆବାହନ ପାଇ ମୁଁ ଯାଇ ଦେଖିଛି, ସବୁଠି ଗଣେଶଙ୍କର ପୂଜା ଆଗ ହୁଏ । ଏଥିପାଇଁ ମୋର ପରାମର୍ଶ — "ଚାଲ ସମସ୍ତେ ଯିବା — ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କୁ ଏ ବିଷୟ କହିବା । ସେ ଏ ବିଷୟରେ ଆମ୍ଭମାନଙ୍କର ମନ ବୁଝିବା ଭଳି କିଛି ପ୍ରତିକାର କରିବେ ।"

ସଭା ଭାଙ୍ଗି ସମସ୍ତେ ବ୍ରହ୍ମାଙ୍କ ପାଖକୁ ଗଲେ । ବ୍ରହ୍ମାଙ୍କ ଆଗରେ ସମସ୍ତେ ଏକ ସ୍ୱରରେ କହିଲେ — "ଆପଣ ଆମ୍ଭମାନଙ୍କୁ ଓ ଜଗତର ସବୁ ଜୀବଙ୍କୁ ସୃଷ୍ଟି କରି କାମ ବାଣ୍ଟି ଦେଇଛନ୍ତି । ଆମେ ଦେବତାମାନେ ଜୀବମାନଙ୍କର ମଙ୍ଗଳ କରିବୁ, ସେମାନେ ଆମର ପୂଜା କରିବେ । ଏହା ଆପଣଙ୍କର ଆଦେଶ । ମାତ୍ର ଆମ୍ଭେମାନେ ଦେଖୁଛୁ ଯେ ଲୋକେ ଆମ ଭିତରୁ ପ୍ରତ୍ୟେକଙ୍କର ପୂଜା କଲାବେଳେ ସବା ଆଗ ଗଣେଶଙ୍କର ପୂଜା କରୁଛନ୍ତି । ତାହାଦ୍ୱାରା ଆମର ତ ପୂଜା ହେଉ ନାହିଁ ବରଂ ଆମେ ଅପମାନ ପାଉଛୁ ।" ଦେବ ଦେବୀଙ୍କର କଥା ଶୁଣି ବ୍ରହ୍ମା ଅଳ୍ପ ହସି କହିଲେ— "ତେବେ ତୁମ୍ଭମାନଙ୍କ ଭିତରୁ କାହାର ପୂଜା ଆଗ ହେବ — କୁହ ।"

ଲକ୍ଷ୍ମୀ କହିଲେ—"ମୋର ପୂଜା ଆଗ ହେବ । କାହିଁକି ନା, ମୁଁ ଧନର ମାଲିକ । ମୋର ପୂଜା କରି ଭକ୍ତଙ୍କୁ ଧନ ମିଳିଲେ ତେଣିକି ଧନ ବଳରେ ସବୁ ମିଳିଯିବ ।"

ସରସ୍ୱତୀ କହିଲେ—"ଲକ୍ଷ୍ମୀଙ୍କ ଦାବୀ ଠିକ୍ ନୁହେଁ । ଧନ ବଳରେ ସବୁ ମିଳିବ, ଏ କଥା ମଧ୍ୟ ସତ୍ୟ ନୁହେଁ । ଏପରି ଲକ୍ଷପତି ଅନେକ ଅଛନ୍ତି ଯାହାଙ୍କୁ ନାମ ସ୍ୱାକ୍ଷର କରି ଆସେ ନାହିଁ । ଧନ ବଳରେ ଆଉ ଯାହା ମିଳୁ ବିଦ୍ୟା ମିଳିବ ନାହିଁ । ବରଂ ବିଦ୍ୟା ଥିଲେ ସେହି ବିଦ୍ୟା ବଳରେ ଧନରତ୍ନ ସବୁ ମିଳିପାରିବ । ସେଥିଲାଗି ମୋର ପୂଜା ଆଗ ହେବା ଉଚିତ ।"

ଇନ୍ଦ୍ର କହିଲେ—"ଦୁନିଆରେ ବିଦ୍ୟା, ଧନ, ରତ୍ନ ସବୁ ଭରି ରହିଥିଲେ ବି ମୁଁ ବର୍ଷା ନ କଲେ ସବୁ ଅକାରଣ ହେବ । ଦୁନିଆ ପୋଡ଼ି ଜଳିଯିବ । ତେଣୁ ମୋର ପୂଜା ଆଗ ହବା ଉଚିତ ।"

ସୂର୍ଯ୍ୟ କହିଲେ—"ମୁଁ ଆଲୋକ ଓ ଉତ୍ତାପ ନ ଦେଲେ ବର୍ଷା ମଧ୍ୟ ହେବ ନାହିଁ, କି ବର୍ଷା ହୋଇ ମଧ୍ୟ କିଛି କାମରେ ଆସିବ ନାହିଁ, ତେଣୁ ମୋର ପୂଜା ଆଗ ହେବା ଦରକାର ।" ଇମିତି କଥା ବଢ଼ୁ ବଢ଼ୁ କନ୍ଦଳ ଉପୁଜିଲା । ଗୋଳମାଳ ବହୁତ ହେଲା । ବ୍ରହ୍ମା ବଡ଼ ଅଡୁଆରେ ପଡ଼ିଲେ । ସେ ଦେଖିଲେ, କାହାକୁ ବଡ଼, କାହାକୁ ସାନ କହିବା କଷ୍ଟକର । ପ୍ରତ୍ୟେକେ ତ ନିଜ ନିଜର ଶକ୍ତି ଅନୁସାରେ କିଛି ନା କିଛି ବଡ଼ କାମ କରୁଅଛନ୍ତି । ସେ ଟିକିଏ ଭାବି କହିଲେ—"ଆଚ୍ଛା ତୁମେ ଦେବ ଦେବୀମାନେ ଗୋଟିଏ କାମ କର—ପ୍ରତ୍ୟେକେ ଏ ପୃଥିବୀ ଗୁରିପଟେ ବୁଲି

ଆସ । ଯେ ସବା ଆଗ ଆସି ଏଠି ପହଞ୍ଚି ପାରିବ, ସେ ଆଗ ପୂଜା ପାଇବ ।”

ବ୍ରହ୍ମାଙ୍କ କଥା ଶୁଣୁ ଶୁଣୁ ଦେବତାମାନେ ଯେ ଯାହା ବାହନରେ ଚଢ଼ି ପୃଥିବୀ ଚାରିପଟେ ବୁଲି ଆଗ ଫେରିବାକୁ ଧାଇଁଲେ । ସମସ୍ତେ ମନେ ମନେ ଭାବିଲେ, ‘ଏଥର ଗଣେଶଙ୍କ କାମ ସରିଗଲା ।’

ଇନ୍ଦ୍ର ଧାଇଁଲେ ତାଙ୍କ ଐରାବତ ହାତୀରେ ବସି । ସୂର୍ଯ୍ୟ ତାଙ୍କର ସାତ ଘୋଡ଼ା ଥିବା ରଥକୁ ଛୁଟାଇଲେ ଖୁବ୍ ଜୋର୍‌ରେ । ସରସ୍ୱତୀ ହଂସ ପିଠିରେ ବସି ଉଡ଼ି ଚାଲିଲେ । ଲକ୍ଷ୍ମୀଙ୍କ ବାହନ ପେଚା ମଧ୍ୟ ଲକ୍ଷ୍ମୀଙ୍କୁ ପିଠିରେ ବସାଇ ଉଡ଼ିଗଲା । କାର୍ତ୍ତିକେୟ ତାଙ୍କ ମୟୂର ବାହନ ପିଠିରେ ଚଢ଼ି ଦଉଡ଼ିଲେ ।

ଗଣେଶ ବିଚରା କରିବେ କଅଣ ? ତାଙ୍କ ଦେହଟିତ କମ୍ ନୁହେଁ । ଦେହକୁ ଚାହିଁ ପେଟଟି ପୁଣି ଅଧିକ ହୋଇଥିବାରୁ ତାଙ୍କ ନାଁ ‘ଲମ୍ବୋଦର’ ହୋଇଛି । ଜଙ୍ଘ ଦୁଇଟି ଅତି ମୋଟ, ପାଦ ଦୁଇଟି ଚେପ୍ଟା ଚେପ୍ଟା । ମୁଣ୍ଡରେ ହାତୀର ମୁଣ୍ଡ, ଥୋରପା ଓ ବଡ଼ ବଡ଼ କାନ । ଏସବୁ ଯାଙ୍କୁ ତେଣେ ବାହନ ଟିକି ମୂଷାଟିଏ ।

ହେଲେ କଅଣ ହେବ ଗଣେଶ ତ ଭାରି ବୁଦ୍ଧିଆ ଓ ଅନ୍ୟ ଦେବତାଙ୍କ ପରି ସାମାନ୍ୟ କଥାରେ ଚଙ୍ଗ ଚଙ୍ଗ ହେବା, ଅଧୀର ହେବା ତାଙ୍କଠି ନ ଥାଏ । ସେ ନିଜ ବାହନ ମୂଷା ପିଠିରେ ବସିପଡ଼ି ପୃଥିବୀ ଚାରିପଟେ ବୁଲିବାକୁ ନ କହି କହିଲେ, ‘‘ସିଧା କୈଳାସ ପର୍ବତକୁ ଚାଲ୍ ।”

ମୂଷା ଗଣେଶଙ୍କୁ ପିଠିରେ ବସାଇ ସିଧା ଗଲେ କୈଳାସ ପର୍ବତକୁ । ସେଠି ପହଞ୍ଚି ଗଣେଶ ଦେଖିଲେ ତାଙ୍କ ପିତା ଭଗବାନ ଶିବ ଧ୍ୟାନରେ ବସିଛନ୍ତି । ପିତାଙ୍କ ପାଖରେ ମାତା ପାର୍ବତୀ ଦେବୀ ମଧ୍ୟ ଅଛନ୍ତି । ଗଣେଶ ଶ୍ରଦ୍ଧା ଓ ଭକ୍ତିରେ ମାତା ପିତାଙ୍କୁ ପ୍ରଣାମ କଲେ ।



ଘେନ ପ୍ରଣାମ ଆହେ ତାତ ମାତ,<br>
ତୁମ ରକ୍ତରୁ ମୁଁ ହୋଇଛି ଜାତ ।<br>
ତୁମ କୃପାରୁ ପାଇଛି ଏ ଦେହ,<br>
ବଞ୍ଚି ରହିଛି ପାଇ ତୁମ ସ୍ନେହ ।<br>
ଯେତେ ଯାହା କହି ଅଛି ଏ ଭବେ<br>
ତୁମ ସମାନ କେ ନୁହଇ ଲବେ ।<br>
ତୁମ ସମାନ କେ ନାହିଁ ସୃଷ୍ଟିରେ,<br>
ତୁମେ ସବୁଠୁଁ ବଡ଼ ମୋ ଦୃଷ୍ଟିରେ ।

ପିତା ମାତା ମୋର ସଂସାରେ ସାର,
ତାଙ୍କ ପଦ୍ମରେ ନମେ ବାର ବାର ।

ଏହି ପଦ କେତୋଟି ବୋଲି ପିତାମାତାଙ୍କ ଚାରି କଡ଼ରେ ଥରେ ନୁହେଁ ଦୁଇଥର ନୁହେଁ ସାତ ଥର ବୁଲିଲେ । ଶେଷକୁ ପ୍ରଣାମ କରି ମୂଷା ପିଠିରେ ବସି ବ୍ରହ୍ମାଙ୍କ ପାଖକୁ ଫେରି ଆସିଲେ ।

ବ୍ରହ୍ମା ପଚାରିଲେ—ଗଣପତି, ଏତେ ଚଞ୍ଚଳ କ'ଣ ଫେରିଲ ? କ'ଣ ଯାଇ ପାରିଲ ନାହିଁ ? ମୂଷା ହାଇରାଣ କଲା ?
ଗଣେଶ କହିଲେ—"ନାହିଁ ଆଜ୍ଞା—

ମୁଁ ଦେଖିଲି-ଆକାଶରୁ, ପୃଥିବୀରୁ
ବହୁଗୁଣେ ବଡ଼ ମୋର ପିତାମାତା,
ତାଙ୍କ ଚାରିପଟେ ସାତ ଥର ବୁଲି
ଫେରିଛି ମୁଁ, ଶୁଣ ହେ ବିଧାତା ।"

ବ୍ରହ୍ମା ସ୍ନେହରେ ଗଣେଶଙ୍କ ପିଠି ଆଉଁସିଦେଇ ତାଙ୍କୁ ବସିବାକୁ କହିଲେ । ଗଣେଶ ବ୍ରହ୍ମାଙ୍କ ପାଖରେ ବସିଲେ ।

ବହୁତ ସମୟ ପରେ ଦେବ ଦେବୀମାନେ ଗୋଟି ଗୋଟି ହୋଇ ପୃଥିବୀ ବୁଲି ଶେଷ କରି ପହଞ୍ଚିଲେ । ପ୍ରତ୍ୟେକେ ଗଣେଶଙ୍କୁ ସେଠି ବସିଥିବାର ଦେଖି ଭାବି ନେଲେ ଯେ ଗଣେଶ ବିଚାରା ଏ ଦୌଡ଼ରେ ଯୋଗ ଦେଲେ ନାହିଁ । ତାଙ୍କ ପୂଜା ପାଇବା କାମ ଆଜିଠୁଁ ଶେଷ ହେଲା । ସବୁ ଦେବତା ଏକାଠି ହେଲା ପରେ ବ୍ରହ୍ମା ତାଙ୍କର ନିଷ୍ପତ୍ତି ଶୁଣାଇ ଦେଲେ—

"ତୁମେ ସବୁ ଦେବତା ନିଜ ନିଜର ଦେବତ୍ୱରେ ଭୋଳ ହୋଇଛ । ପିତୃମାତୃ ଭକ୍ତି ଆଦି ମହତ୍ତ୍ୱ ଗୁଣ ତୁମଠି ନାହିଁ ।

ଗଣେଶ ନଜର ପିତମାତାଙ୍କୁ ଏ ପୃଥିବୀରୁ ବଡ଼ ମନେ କରି ତାଙ୍କ ଚାରିକଡ଼ରେ ସାତ ଥର ବୁଲି ସବା ଆଗ ଫେରିଛନ୍ତି । ଗଣେଶ ହେଉଛନ୍ତି ପିତୃମାତୃ ଭକ୍ତ, ଚତୁର ଏବଂ ବୁଦ୍ଧିମାନ୍ । ସେ ସବୁଦିନେ ସବୁଠିଁ ଆଗ ପୂଜା ପାଇବେ – ସିଦ୍ଧି ରହିବ ତାଙ୍କ ହାତରେ – ସେ ହେବେ ସିଦ୍ଧିଦାତା । ତୁମ୍ଭମାନଙ୍କୁ ଯେ ପୂଜା କରିବେ, ସେ ସିଦ୍ଧି ବା ପୂଜାଫଳ ପାଇବେ ଗଣେଶଙ୍କଠୁଁ ।"

ଦେବତାମାନେ ସମସ୍ତେ ଗଣେଶଙ୍କର ପିତୃମାତୃ ଭକ୍ତି ଓ ଚତୁର ବୁଦ୍ଧିରେ ସନ୍ତୁଷ୍ଟ ହୋଇଗଲେ । ତେଣୁ ବ୍ରହ୍ମାଙ୍କ ନିଷ୍ପତ୍ତିରେ ସେମାନଙ୍କର କିଛି ଆଉ ଆପତ୍ତି ରହିଲା ନାହିଁ । ସେହିଦିନୁ ଗଣେଶ ବରାବର ସବା ଆଗ ପୂଜା ପାଉଛନ୍ତି । ଅଗ୍ରପୂଜ୍ୟ ଗଣାଧିପ !



## ହନୁମାଙ୍କଡ଼ର ମୁହଁ କଳା ହେଲା କାହିଁକି ?

[ ଓଡ଼ିଶୀ ଲୋକକଥା ]

ତ୍ରେତା ଯୁଗର କଥା । ନିଜେ ଭଗବାନ ମନୁଷ୍ୟ ରୂପରେ ଅଯୋଧ୍ୟାର ରାଜା ଦଶରଥଙ୍କ ପୁଅ ହେଲେ । ତାଙ୍କ ନାମ ହେଲା ରାମଚନ୍ଦ୍ର । ତାଙ୍କର ଆଉ ତିନୋଟି ଭାଇ ଥାନ୍ତି । ରାମ ଜନକରାଜାଙ୍କ ଝିଅ ସୀତାଙ୍କୁ ବାହା ହେଲେ । ତାଙ୍କର ଭଲ ଗୁଣ, ଭଲ ଆଚରଣ ଦେଖି ପିତା ଦଶରଥ ତାଙ୍କୁ ରାଜଗାଦି ଦେବାକୁ ସବୁ ଯୋଗାଡ଼ କଲେ । କିନ୍ତୁ ଦଶରଥଙ୍କ ମଝିଆଁ ରାଣୀ ଗୋଳମାଳ ଲଗାଇଲାରୁ ରାମ ରାଜା ନ ହୋଇ ବନକୁ ଗଲେ । ସୀତା ଓ ରାମଙ୍କର ସାନ ଭାଇ ଲକ୍ଷ୍ମଣ ତାଙ୍କ ସଙ୍ଗରେ ଗଲେ ।

ପଞ୍ଚବଟୀ ବନରେ ପତ୍ର କୁଡ଼ିଆଟିଏ କରି ରାମ, ଲକ୍ଷ୍ମଣ ଓ ସୀତା ରହିଥାନ୍ତି । ରାମ ଲକ୍ଷ୍ମଣ ନିତି ବଣରୁ ଫଳମୂଳ ଆଣନ୍ତି । ତାକୁ ଖାଇ ସେମାନେ ସେଠି ଦିନ କାଟନ୍ତି । ଦିନେ ସେହି ବନରେ ରାମଙ୍କ କୁଡ଼ିଆର ଖଣ୍ଡେ ଦୂରରେ ଗୋଟିଏ ସୁନାମୃଗ ଚରୁଥିଲା । ଖରା ପଡ଼ି ତା ଦେହର ରଙ୍ଗ ଚକ୍ ଚକ୍ କରୁଥାଏ । ତାକୁ ଦେଖି ସୀତା ବଡ଼ ଲୋଭ କଲେ । ମୃଗଟି ଆଣିଦେବାକୁ ରାମଙ୍କୁ କହିଲେ । ରାମ କୁଡ଼ିଆରେ ସୀତାଙ୍କୁ ଛାଡ଼ି ଲକ୍ଷ୍ମଣଙ୍କୁ କହିଲେ, "ତୁ ସୀତାଙ୍କୁ ଜଗିଥା—ମୁଁ ଯାଉଛି ସୁନାମୃଗ ଆଣିବି ।" କିଛି ସମୟ ପରେ ରାମଙ୍କୁ ବିପତ୍ତି ପଡ଼ିବ ବୋଲି ସୀତା ତରବରି ଲକ୍ଷ୍ମଣଙ୍କୁ ବି ପଠାଇ ଦେଲେ । ଏକୁଟିଆ ସେହି କୁଡ଼ିଆରେ ରହିଲେ ।

ଏତିକିବେଳେ ଲଙ୍କାର ରାଜା ରାବଣ ଯୋଗୀ ବେଶ ଧରି ସୀତାଙ୍କୁ ଭିକ ମାଗିଲା । ସୀତା ଭିକ ଦେଲା ବେଳକୁ ସେ ତାଙ୍କ ହାତ ଧରି ଘୋଷାରି ନେଲା । ଗୋଟାଏ ରଥରେ ବସାଇ ନିଜ ଦେଶକୁ ବାହାରି ଗଲା । ସୀତା ବିକଳ ହୋଇ କାନ୍ଦୁଥାନ୍ତି । ଦୁଷ୍ଟ ରାବଣ ସୀତାଙ୍କୁ ନେଇ ତାର ଅଶୋକ ବନ ବଗିଚାରେ ରଖିଲା । ସୀତା ଗୋଟିଏ ଗଛମୂଳେ ବସିଥାନ୍ତି ।

ପଚେଲ ଅସୁରୁଣୀ ତାଙ୍କୁ ଘେରି ବସିଥାନ୍ତି । ସୀତାଙ୍କୁ ଭାରି ଡର ମାଡ଼ୁଥାଏ । ଏଣେ ରାମ ଲକ୍ଷ୍ମଣଙ୍କ କଥା ଭାବି ସେ ଦିନ ରାତି ଲୁହ ଗଡ଼ାଉଥାନ୍ତି ।

ଏଣେ ରାମ ଲକ୍ଷ୍ମଣ ସୁନା ମୃଗ ଧରି ଫେରିଲା ବେଳକୁ କୁଡ଼ିଆ ଖାଲି ପଡ଼ିଛି । ସୀତା ନାହାନ୍ତି । ବନ ଭିତରେ ବୁଲି ବୁଲି ସୀତାଙ୍କୁ ଦୁଇ ଭାଇ ବହୁତ ଖୋଜିଲେ । ପାଇଲେ ନାହିଁ । କେତେଦିନ ପରେ ଖବର ପାଇଲେ ଯେ ରାବଣ ସୀତାଙ୍କୁ

ନେଇଯାଇଛନ୍ତି । ସେମାନେ କଣ କରିବେ ? ରାବଣ ପାଖକୁ କେମିତି ଯିବେ । ଖବର ସତ କି ମିଛ ବୁଝିବେ ବା କପରି ? ଏମିତି ନାନା ଚିନ୍ତାରେ ଦୁଇ ଭାଇ ବନରେ ବୁଲୁଥାନ୍ତି । ବୁଲି ବୁଲି କିଷ୍କିନ୍ଧ୍ୟା ରାଜ୍ୟରେ ଯାଇଁ ପହଞ୍ଚିଲେ ।

କିଷ୍କିନ୍ଧ୍ୟାର ରାଜା ବାଳୀ ତାଙ୍କ ସାନ ଭାଇ ସୁଗ୍ରୀବଙ୍କୁ ଘରୁ ତଡ଼ି ଦେଇଥିଲେ । ସୁଗ୍ରୀବ ବାଳୀ ଡରରେ ଗୋଟିଏ ପାହାଡ଼ରେ ଲୁଚି ରହିଥିଲେ । ସୁଗ୍ରୀବଙ୍କ ସଙ୍ଗେ ଯୋଗକୁ ରାମ ଲକ୍ଷ୍ମଣଙ୍କର ଭେଟ ହେଲା । ସୁଗ୍ରୀବ ରାମଙ୍କର ଦୁଃଖ ଦୁର୍ଦ୍ଦଶାର କଥା ଶୁଣିଲେ । ରାମ ମଧ୍ୟ ସୁଗ୍ରୀବଙ୍କ ଦୁଃଖ ଦୁର୍ଦ୍ଦଶାର ଖବର ବୁଝିନେଲେ । ରାମ ସୁଗ୍ରୀବ ସେଇଠୁଁ ମିତ ବସିଲେ । ରାମ ବାଳୀକୁ ମାରି ସୁଗ୍ରୀବଙ୍କୁ କିଷ୍କିନ୍ଧ୍ୟାର ରାଜା କରିଦେଲେ । ସୁଗ୍ରୀବ ତାଙ୍କର ହଜାର ହଜାର ମାଙ୍କଡ଼ ପ୍ରଜାଙ୍କୁ ସୀତାଙ୍କୁ ଖୋଜିବା ଲାଗି ଚାରି ଆଡ଼େ ପଠାଇଲେ ।

ମହାବୀର ହନୁମାନ, ହେଉଛନ୍ତି ସୁଗ୍ରୀବଙ୍କର ଭଣଜା । ବାଳୀଙ୍କ ପୁଅ ଅଙ୍ଗଦ ମଧ୍ୟ ଖୁବ୍ ବଡ଼ ବୀର । ଏଇମାନଙ୍କୁ ମୁଖିଆ କରି ଗୋଟିଏ ଦଳ ଗଲେ ଦକ୍ଷିଣ ଦିଗକୁ । ହନୁମାନ କେବଳ ବଡ଼ ବୀର ନୁହନ୍ତି । ତାଙ୍କ ଦେହରେ ଶକ୍ତି ଯେପରି ଥିଲା, ପ୍ରାଣରେ ରାମଙ୍କ ପ୍ରତି ଭକ୍ତି ମଧ୍ୟ ସେହିପରି ଥିଲା । ରାମ ଏହା ଜାଣି ନିଜର ମୁଦିଟି ହନୁମାନଙ୍କୁ ଦେଇଥିଲେ ।

ବାନରଦଳ ସମୁଦ୍ର କୂଳ ଯାକେ ଯାଇ ସେଇଠି ଅଟକି ଗଲେ । ସମୁଦ୍ର ପାରି ହେଲେ ସିନା ଲଙ୍କାକୁ ଯାଇ ହେବ ? ସମୁଦ୍ର ପାରି ହେବେ ବା କପରି ? ସେମାନଙ୍କୁ ଆଉ ବୁଦ୍ଧି ଦିଶିଲା ନାହିଁ ।

ସେଇଠାରୁ ଫେରି ଆସିବାକୁ ମନ କଲେ । ମାତ୍ର ଏଣେ ଗଲାବେଳେ ରାଜା ସୁଗ୍ରୀବ କହିଛନ୍ତି ଯେ, ସୀତାଙ୍କ ଖବର ନ ଆଣି ଖାଲି ଫେରିଲେ ମୁଣ୍ଡ କାଟ ହେବ, ତେଣେ ସମୁଦ୍ରରେ ପଶିଲେ ପ୍ରାଣ ଯିବ । କଣ କରିବେ ?

ଏହିପରି ସଙ୍କଟ ସମୟରେ ମହାବୀର ହନୁମାନ୍ ରାମନାମ ସ୍ମରଣ କରି ଗୋଟିଏ ପାହାଡ଼ ଉପରକୁ ଉଠିଗଲେ । ସେଇଠୁ ଡିଆଁ ମାରି ସମୁଦ୍ର ଆରପଟେ ଲଙ୍କାରେ ପହଞ୍ଚିଲେ । ତାଙ୍କଠାରେ ଏପରି ଶକ୍ତି ଥିଲା ଯେ ଇଚ୍ଛା କଲେ ସେ ମାଛି ପରି ସାନ ହୋଇ ପାରିବେ, ପୁଣି ପର୍ବତ ପରି ବଡ଼ ମଧ ହୋଇ ପାରିବେ ।



ଲଙ୍କାରେ ପହଞ୍ଚି ସେ ସିଧା ଚାଲିଗଲେ ଅଶୋକ ବନକୁ । ସାନ ରୂପ ଧରି ଗଛ ଡାଳରେ ବସି ରହିଲେ । ଦେଖିଲେ — ଅଶୋକ ଗଛ ମୂଳରେ ସୀତା ଗାଲରେ ହାତ ଦେଇ ବସିଛନ୍ତି । ଆଖିରୁ ଧାର ଧାର ଲୁହ ବହି ଯାଉଛି । ରାମଙ୍କର ଗୁଣ ଗୁଣି ଗୁଣୁ ଗୁଣୁ ହୋଇ କାନ୍ଦୁଛନ୍ତି । ମଝିରେ ମଝିରେ ଚମକି ଉଠୁଛନ୍ତି । ଗୋଟିଏ ଗୋଟିଏ ଦୀର୍ଘ ନିଶ୍ୱାସ ଛାଡ଼ୁଛନ୍ତି । ତାଙ୍କ ଚାରି କଡ଼ରେ କେତେ ଅସୁରୁଣୀ ଜଗି ବସିଛନ୍ତି । କାହାର ଦାନ୍ତ ଢିଙ୍କି ପରି ତ କାହାର ଆଖି ଚକ ପରି, ପୁଣି

କାହାର କାନ କୁଲା ପରି ତ କାହାର ମୁଣ୍ଡ ହାଣ୍ଡି ପରି, ପେଟ ଢୋଲ ପରି ।

ସେମାନଙ୍କ ବିକଟ ରୂପ ଦେଖିଲେ ଦେହ ଥରି ଉଠୁଛି । ଏସବୁ ଦେଖି ମହାବୀର ହନୁମାନଙ୍କର ମନରେ ବଡ଼ ଦୁଃଖ ହେଲା । ସେ ସେହି ଗଛ ଡାଳରେ ଥାଇ 'ରାମ' 'ରାମ' ବୋଲି କହିଲେ । କାନରେ ରାମଙ୍କର ନାମ ଶୁଣି ସୀତା ଉପରକୁ ଚାହିଁବାରୁ ହନୁମାନ ତଳକୁ ଓହ୍ଲାଇ ଆସି ମୁଣ୍ଡ ଲଗାଇ ତାଙ୍କୁ ପ୍ରଣାମ କଲେ, ହାତଯୋଡ଼ି ଠିଆ ହେଲେ । ସୀତା ଥରି ଥରି କଣ୍ଠରେ କହିଲେ—

"କପି ତୁ କାହୁଁ ଅଇଲୁ
ଶ୍ରୀରାମ ନାମ ଧଇଲୁ ,

ହୃଦୟ ମୋହର ଦହନ କାଳରେ
ଚନ୍ଦନ ଲେପନ କଲୁ ।"

ହନୁ ବୋଇଲେ "ଗୋ ମାତ,
ମୁଁ ଶ୍ରୀରାମଙ୍କ ଜଣେ ଦୂତ;

ତୁମରି ଖବର ନେବାପାଇଁ ମତେ
ପଠାଇ ଅଛନ୍ତି ସେତ ।"

ଏହା କହି ହନୁମାନ ଶ୍ରୀରାମଙ୍କ ମୁଦିଟି ସୀତାଙ୍କ ଆଗରେ ଥୋଇଦେଲେ । ମୁଦିଟି ଦେଖି ସୀତା କୋଟିନିଧି ପାଇଲାପରି ଖୁସି ହେଲେ । ସେ ଶ୍ରୀରାମଙ୍କର ସବୁ ଖବର ହନୁମାନଙ୍କଠାରୁ ବୁଝିଲେ ନିଜର ସବୁ କଥା ତାଙ୍କ ଆଗରେ କହିଲେ । କଥାଭାଷା ସରିଲାରୁ

ହନୁମାନ କହିଲେ, "ମା, ମତେ ଭାରି ଭୋକ ହେଲାଣି । ଏ ଅଶୋକ ବନରେ ସୁନ୍ଦର ଫଳସବୁ ଅଛି । ମୁଁ ପାଉଛି ଖାଇବି ।" ସୀତା କହିଲେ,—"ଏତ ଦୁଷ୍ଟ ରାବଣର ବଗିଚା । ଏଥିରେ ତଣି ସେପରି କାମ କଲେ ସେ ବହୁତ ଅନିଷ୍ଟ କରିବ ।"

ହନୁମାନ କହିଲେ,—ରାବଣ ଖବର ପାଇ ମୋର ଅନିଷ୍ଟ କରିବା ଆଗରୁ ମୁଁ ପେଟେ ଫଳ ଖାଇସାରିଥିବି । ମୋ ଦେହରେ ବଳ ଆସିଥିବ । ସେତେବେଳେ ସବୁ ମୁଁ ସମ୍ଭାଳି ପାରିବି । ଏହା କହି ଅଶୋକବନର ଗଛଗୁଡ଼ିକରେ ଯେତେ ଭଲ ଫଳ ଥିଲା ପେଟେ ଖାଇଲେ । ମାଙ୍କଡ଼ିଆ ସ୍ୱଭାବରେ ଏଡ଼ାଳ ସେଡ଼ାଳ ଡେଇଁ ଖାଇଲେ ଯେତେ, ଭାଙ୍ଗି ଉଜାଡ଼ିଲେ ତାର କେତେ ଗୁଣ ।

ଜଗୁଆଳମାନେ ଯାଇ ରାବଣକୁ କହିଲେ—

ମାଙ୍କଡ଼ ଗୋଟାଏ ଆସିଛି କାହୁଁ
ଉଜାଡ଼େ ବଗିଚା ସେ ରହି ରହି ।

ଖାଇଲାଣି ଫଳ ଭାଙ୍ଗୁଛି ଗଛ
ଝଗଡ଼ୁ ନାହିଁ କିଛି ଆଗ ପଛ ।

ଭଙ୍ଗା ଡାଳ ଧରି ଗୋଡ଼ାଇ ମାରେ
ପଳାଇ ଆସିଛୁ ତାହାରି ଡରେ ।

ରକ୍ଷା କର ବୋଲି କରୁ ଗୁହାରି,
ଜଣାଯାଏ ସେହି ବଳୁଆ ଭାରି ।

ଜଗୁଆଳଙ୍କ କଥା ଶୁଣି ରାବଣ ହସି ଦେଲା—କାହିଁକି ନା ସେ ନିଜେ ବାହୁବଳରେ ତିନପୁର ଜିତିଛି — ଛାର ଛୁଟକର ମାଙ୍କଡ଼

ଲାଗି ତା ଆସନ କାହିଁକି ଟଳିବ ? ସେ ତାର ପୁଅ ଅକ୍ଷୟକୁମାରକୁ କହିଲା, "ଅକ୍ଷୟ, ତୁ ଯା ସେ ମାଙ୍କଡ଼ଟାକୁ ଘଉଡ଼ି ଦେଇ ଆସିବୁ ।"

ଅକ୍ଷୟ କୁମାର ଆସିଲା । ଅକ୍ଷୟ କୁମାର ବଡ଼ ବୀର. ମାତ୍ର ହନୁମାନ ଅକ୍ଷୟ କୁମାରକୁ ଡରିଲେ ନାହିଁ । ଦୁହିଁଙ୍କ ଭିତରେ ଲଢ଼େଇ ହେଲା । ହନୁମାନ ଗୋଟିଏ ଚାପୁଡ଼ାରେ ଅକ୍ଷୟ କୁମାରକୁ ମାରି ଦେଲେ । ପୁଅ ମରିବା ଖବର ପାଇ ରାବଣ ଖୁବ୍ ରାଗିଲା । ହନୁମାନଙ୍କୁ ବାନ୍ଧି ନେଲା । ହନୁମାନ ରାବଣର ସାମ୍ନାରେ ଠିଆହୋଇ କହିଲେ—"ମୁଁ ହେଉଛି ରାମଚନ୍ଦ୍ରଙ୍କର ଦୂତ । ଆସିଥିଲି ସୀତାଙ୍କ ଖବର ନେବାକୁ । ସମୁଦ୍ର ପାରି ହୋଇ ଏତେ ବାଟ ଆସିବାରୁ ଭୋକ ହେଲା ପ୍ରବଳ । ଖାଆନ୍ତି କଅଣ ? ଆମର ତ ଖାଦ୍ୟ ହେଉଛି ଫଳ । ଦେଖିଲି, ଆଖି ଆଗରେ ବହୁତ ଭଲ ଫଳ ଅଛି । ତାହା କିଏ ଛାଡ଼େ ? ଫଳ ଖାଇଲି । ଆମ ଜାତିର ସ୍ୱଭାବ ତ ସେମିତି, ଏଡାଳ ସେଡାଳ ଡେଇଁ ଡେଇଁ କେତେ କଣ ହୋଇଥିବ । ଏଥିପାଇଁ ଅକ୍ଷୟ କୁମାର ମତେ ବିନା ଦୋଷରେ ଦଣ୍ଡ ଦେବାକୁ ଯାଇ ଜୀବନ ଦେଲା । ମୁଁ କ'ଣ କରିବ ?"

ରାବଣ ହନୁମାନଙ୍କର କୌଣସି କଥା କାନକୁ ନେଲା ନାହିଁ । ହୁକୁମ କଲା—"ଏ ମାଙ୍କଡ଼ଟାକୁ ଜୀବନରେ ମାରିଦଅ ।"

ରାବଣର ଭାଇ ବିଭୀଷଣ ରାବଣ ପାଖରେ ମନ୍ତ୍ରୀ ପରି ଥାନ୍ତି । ବିଭୀଷଣ କହିଲେ, "ଯେତେହେଲେ ସେ ଜଣେ ଦୂତ । ଦୂତକୁ ଜୀବନରେ ମାରିବା ଅନ୍ୟାୟ । ତାକୁ ଦଣ୍ଡ ଦେବା ଉଚିତ ।"

ରାବଣ ମନକୁ ଏ କଥା ପାଇଲା । ସେ ଏଥର ହୁକୁମ ଦେଲା, “ଯା ଲାଙ୍ଗୁଳରେ କନା ଗୁଡ଼େଇ ନିଆଁ ଲଗେଇ ଦିଅ । ସେ ପୋଡ଼ି ସିଝି କଇଁଚା ଦେହଧରି ପଳାଇ ଯାଉ ।”

ରାବଣର ଏମିତି ହୁକୁମ ଶୁଣି ଲଙ୍କାର ଅସୁରମାନେ ମନ-ଖୁସିରେ ଧାଇଁ ଆସିଲେ । କନା ସବୁ ଆଣି ହନୁମାନଙ୍କ ଲାଙ୍ଗୁଳରେ ଗୁଡ଼ାଇଲେ । ହନୁମାନ ସୁନା ପିଲା ପରି ଥିରହୋଇ ଲାଙ୍ଗୁଳଟି ଦେଖାଇଥାନ୍ତି । ତାଙ୍କ ଶକ୍ତି ବଳରେ ଲାଙ୍ଗୁଳ ବଢ଼ି ବଢ଼ି ଯାଉଥାଏ । ଅସୁରମାନେ ରାଜ୍ୟଯାକର କନା, ଲୁଗାପଟା ସବୁ ଆଣି ଗୁଡ଼ାଇଲେ । ମାଠିଆ ମାଠିଆ ତେଲ ଆଣି ସେ କନାରେ ଇଢ଼ିଲେ ।



ସେମାନେ ଭାବୁଥାନ୍ତି, ନିଆଁ ଲଗାଇଲା କ୍ଷଣି ପୁଚା ଚଢ଼ୁଇ ପରି ଡେଇଁବ । ଅଶୋକ ବଣରେ ଏ ଗଛ ସେ ଗଛ ଡେଇଁବା ମଜା ପାଇବ । ସବୁ କାମ ସାରି ନିଆଁ ଲଗେଇ ଦେଲେ ।

ହନୁମାନଙ୍କ ଲାଙ୍ଗୁଳର ନିଆଁ ହୁତୁ ହୁତୁ ହୋଇ, ଜଳିଲା । ହନୁମାନଙ୍କ'ଣ କଲେ ନା—ଲଙ୍କା ଗଡ଼ଯାକ ବୁଲି ଏ ଘର ସେ ଘର

ଡେଇଁଲେ । ଲଙ୍କାଗଡ଼ରେ ଏଘରୁ ସେଘରକୁ ଡ଼େଇଁଲାବେଳେ ଅଙ୍ଗାର କଳା ଲାଗି ତାଙ୍କ ହାତ ପାଦ କଳା ହୋଇ ଯାଇଥିଲା । ଲଙ୍କାଗଡ଼ ପୋଡ଼ ସାରି ହନୁମାନ ହାତରେ ମୁହଁରୁ ଝାଳ ପୋଛି ଦେଲେ । ହାତର କଳା ମୁହଁରେ ଲାଗି ମୁହଁଟି କଳା ହୋଇଗଲା । ସେହିଦିନୁ ହନୁମାନଙ୍କ ଜାତିର ହନୁ ମାଙ୍କଡ଼ମାନଙ୍କ ମୁହଁ, ହାତ, ପାଦ କଳା । ପାତିମାଙ୍କଡ଼ଯାକ ଅଙ୍ଗଦଙ୍କ ବଂଶର । ସେଥିପାଇଁ ସେମାନଙ୍କ ଦେହରେ କୋଉଠି ହେଲେ ଟିକିଏ କଳା ନାହିଁ ।



ମୁଦ୍ରାକର—ଶ୍ରୀ ଦେବବ୍ରତ କର, ସୁଲେଖା ପ୍ରିଣ୍ଟର୍ସ, କଟକ—୨